










# ଜାତୀୟ ପତାକାର



# କାହାଣୀ



ଜାତୀୟ ପତାକାର କାହାଣୀ




ସଙ୍କଳକ : ବିନୟକୃଷ୍ଣ ପଟ୍ଟନାୟକ

ଅଙ୍କନ : ଅସିତ୍ ଦାସ

ପ୍ରକାଶକ : ଭାରତ ଜ୍ଞାନ ବିଜ୍ଞାନ ସମିତି,
ସି-୨, ହାଉସିଂ ବୋର୍ଡ୍ କଲୋନୀ,
ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩
ଫୋନ୍ : (୦୬୭୪) ୪୭୦୮୯୧

ଅଙ୍ଗସଜ୍ଜା : ଓରିକନ୍ କମ୍ପ୍ୟୁଟରସ୍, ଭୁବନେଶ୍ୱର ।

ମୁଦ୍ରଣ : ପଦ୍ମା କମର୍ସିଆଲ୍, ଭୁବନେଶ୍ୱର ।

ସହଯୋଗ ରାଶି : *ଦଶ ଟଙ୍କା ମାତ୍ର*

ପ୍ରକାଶ କାଳ : ଅଗଷ୍ଟ ପହିଲା, ୧୯୯୭




ଏହି ସଙ୍କଳନଟିକୁ ଓଡିଶାରେ 'ଖୁସିରେ ପଢିବା ଅଭିଯାନ' (Jan Vach Andolan) ଓ 'ଦେଶକୁ ଜାଣିବା, ଦେଶକୁ ବଦଳାଇବା'କାର୍ଯ୍ୟକ୍ରମ (DJDE ପାଇଁ ପ୍ରସ୍ତୁତ କରାଯାଇଛି । ଦେଶର ପତାକାର ଇତିହାସ ଓ ଭାବକୁ ବୁଝିବେ ଆମେ ନିଜ ଦାୟିତ୍ୱ ପ୍ରତି ଅଧିକ ସଚେତନ ହୋଇପାରିବା । ଲୋକଙ୍କୁ ଏହି ଦିଗରେ ସଚେତନ କରାଇବା ଏହି ବହିର ମୂଳ ଉଦ୍ଦେଶ୍ୟ । ଏହାଛଡା ଓଡିଶାର ଗାଁ ଗହଳିରେ ଲୋକଙ୍କର ପଠନ ରଚିକୁ ତେଜିବା ଓ ଏକ ପାଠାଗାର ଆନ୍ଦୋଳନକୁ ସକ୍ରିୟ କରିବା ପାଇଁ ସମିତି ତରଫରୁ ଏହା ଏକ ଦେଶବ୍ୟାପୀ ଉଦ୍ୟମ ।


• *Story of Flags* • Compilation - Binaya Krushna Pattanayak. • Illustration - Asit Das • Published by B.G.V.S., Orissa for Jan Vachan Andolan & DJDB • Price - Rs. 10.00 • Publication Period - 1st August 1997.



# ଜାତୀୟ ପତାକାର କାହାଣୀ





ଭାରତ ଜ୍ଞାନ ବିଜ୍ଞାନ ସମିତି

ଓଡିଶା



# ସୂଚୀପତ୍ର









# ସଙ୍କଳନଟିର ପୃଷ୍ଠଭୂମି

ପଚାଶ ବର୍ଷ ତଳେ ଆମ ଦେଶ ଇଂରେଜ କବଳରୁ ମୁକୁଳି ସ୍ୱାଧୀନ ହୋଇଥିଲା । କିନ୍ତୁ ଏଥିପାଇଁ ଆମର ଅନେକ ସାଥିଙ୍କୁ ନିଜର ସବୁ ସୁଖ, ଆଶାକୁ ଉତ୍ସର୍ଗ କରିବାକୁ ପଡିଥିଲା । କେତେ ସାଥି 'ବନ୍ଦେ ମାତରମ୍' ଆଘୋଷ ଦେଇ ହସିହସିକା ଦେଶ ମା' ପାଇଁ ଫାଶି ଖୁଣ୍ଟରେ ଚଢ଼ିଥିଲେ । କିନ୍ତୁ ଆଜି ପଚାଶ ବର୍ଷ ଭିତରେ ଏହି ଦେଶ କେତେ ବଦଳିଯାଇଛି । ଏବେ ଜମା ଲାଗୁନାହିଁ ଯେ ଦିନେ ଏହି ଭୂଇଁରେ ଏକ ତ୍ୟାଗମୟ ସ୍ୱାଧୀନତା ସଂଗ୍ରାମ ଚାଲିଥିଲା । ଆଜି ଦେଶକୁ ଆମେ କେଉଁ ଆଡେ ନେବାକୁ ଚାହୁଁଛେ ତାହା ସ୍ପଷ୍ଟ ଦେଖାଯାଉଛି । ଏ ଦେଶରେ ଧନୀ ଆହୁରି ଧନୀ ହୋଇଚାଲିଛନ୍ତି । ଗରିବଙ୍କ ସଂଖ୍ୟା ବଢ଼ିବା ସାଙ୍ଗକୁ ସେମାନେ ଗରିବତର ହୋଇ ଚାଲିଛନ୍ତି । ଦେଶର ଶିକ୍ଷା, ସ୍ୱାସ୍ଥ୍ୟ, ପରିବେଶ, ବିଜ୍ଞାନ, କାରିଗରୀ, ସଂସ୍କୃତି, ସଭ୍ୟତା, ଆଦି ସବୁ ବିପର୍ଯ୍ୟସ୍ତ ହୋଇପଡିଛି । ଅଥଚ ଆମେ ସ୍ୱାଧିନତାପ୍ରାପ୍ତିର ପଚାଶତମ ବର୍ଷକୁ ଧୂମ୍‌ଧାମରେ ପାଳନ କରିବାକୁ ବାହାରିଛେ । ତାହା ପୁଣି ଫେଶନ ଶୋ, ଭୋଜିଭାତ, ନାଚଗୀତ, ଖେଳକୁଦ ଓ ଦିଗହୀନ ଆଲୋଚନା ଚକ୍ର ମାଧମରେ । ଏସବୁ ପ୍ରକୃତରେ କାହାପାଇଁ ? କଷ୍ଟୋପାର୍ଜିତ ଏହି ସ୍ୱାଧୀନତା ଅଳ୍ପ କିଛି ସୁବିଧାବାଦୀଙ୍କ ବିଳାସବ୍ୟସନ ପାଇଁ ନା ଦେଶରେ ଥିବା ସବୁତକ ମଣିଷଙ୍କର ଭୋକ,ଅଭାବକୁ ମେଣ୍ଟାଇବା ପାଇଁ ?

ଏ ଦିଗରେ କେହି ଯେ ଚିନ୍ତା କରିନାହାନ୍ତି ତା' ନୁହେଁ, କିନ୍ତୁ ଏହାକୁ ସୁଧାରିବା ପାଇଁ କୌଣସି ବଳିଷ୍ଠ ଯୋଜନା ବା ଉଦ୍ୟମ ହୋଇନାହିଁ । ଏହି ଅସନ୍ତୋଷକୁ ପୁଞ୍ଜି କରି ଜନବିଜ୍ଞାନ ଆନ୍ଦୋଳନର ଜନ୍ମ । ବିକାଶର ଚାବିକାଠି-ବିଜ୍ଞାନର ଧାରାକୁ ଲୋକଙ୍କ ପାଖରେ ପହଞ୍ଚାଇବା ସଙ୍ଗେ ସଙ୍ଗେ ଦେଶର ବିଭିନ୍ନ କ୍ଷେତ୍ରରେ ବିଜ୍ଞାନସମ୍ମତ ବିକାଶ ପାଇଁ ଏହା ତରଫରୁ ଚେଷ୍ଟା କରାଯାଉଛି । ସାକ୍ଷରତା କାର୍ଯ୍ୟକ୍ରମରୁ ଆରମ୍ଭ କରି ଶିକ୍ଷା, ସ୍ୱାସ୍ଥ୍ୟ, ପରିବେଶ, ଶକ୍ତି, ଶିଳ୍ପ, ସାହିତ୍ୟ, ସଂସ୍କୃତି, ସ୍ୱାଭିମାନ ଆଦି ସବୁ କ୍ଷେତ୍ରରେ ଏ ପ୍ରକାରର କିଛି କିଛି କାର୍ଯ୍ୟକ୍ରମ ଚାଲିଛି । ଭାରତ ଜ୍ଞାନ ବିଜ୍ଞାନ ସମିତି ଏସବୁ ପରଖ ପାଇଁ ସବୁ ସ୍ତରର ଲୋକଙ୍କର ଏକ ମୁକ୍ତ ପ୍ରୟୋଗସ୍ଥଳୀ ।

ଏହାର ବିଭିନ୍ନ କାମକୁ ଅଧିକ ଲୋକମୁଖୀ ଓ ବିଜ୍ଞାନସମ୍ମତ କରିବା ବିଷୟକୁ ନେଇ ଆମମାନଙ୍କ ମଧରେ ବି ତର୍କ ଚାଲିଛି । ଗତ କାର୍ଯ୍ୟକାରିଣୀ ବୈଠକ ସମୟରେ ଆମେ ଆମର ବିଭିନ୍ନ କାର୍ଯ୍ୟକ୍ରମର ସମୀକ୍ଷା କରୁଥିଲୁ । ଏଗୁଡିକର ଫଳାଫଳ, ଆମର ଦଳଗତ ଦକ୍ଷତା ଓ ଦିଗ ସମ୍ପର୍କରେ ଯଥେଷ୍ଟ ଆଲୋଚନା ହୋଇଥିଲା । ଚିତ୍ତଭାଇ (ଶିକ୍ଷାବିତ୍ ପ୍ରଫେସର୍ ଚିତ୍ତରଞ୍ଜନ ଦାସ, ଏବେ ସମିତରି ଅଧକ୍ଷ) ଏକ ପ୍ରସ୍ତାବ ଦେଲେ : ଆମେ ଅତି ବଡ ଯୋଜନା କରିବା ପାଇଁ ଚେଷ୍ଟା କରୁଛେ । ଅଥଚ ଏହା ଯାହାପାଇଁ ଉଦ୍ଦିଷ୍ଟ ସେମାନଙ୍କ ପାଖରେ କେତେ ଦୂର ପହଞ୍ଚିପାରୁଛେ । ସମସ୍ତ ନିଷ୍ଠାପର ଉଦ୍ୟମ ସତ୍ତ୍ୱେ ଆମେ ଠିକ୍ ଜାଗାକୁ ଆଲୋଡ଼ିତ କରିପାରୁନାହେଁ । ଏହା ଅପେକ୍ଷା ଆମେ କେତେକ ଛୋଟ ଅଥଚ ମୌଳିକ କାମରୁ ଆରମ୍ଭ କରି ଏହାକୁ ବଢାଇବାର ଚେଷ୍ଟା କଲେ ଭଲ ହୁଅନ୍ତା । ପ୍ରସ୍ତାବ ରହିଲା -ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ବର୍ଷରେ ଆମେ ଅଳ୍ପ କେତୋଟି

ଗାଁରେ ଗାଁଟାଯାକର ପିଲାଙ୍କୁ ଜାତୀୟ ପତାକା ତଳେ ଏକାଠି କରାଇପାରିବା କି ? କଥାଟି ସରଳ ଓ ସାଧାରଣ ମନେ ହେଉଥିଲେ ବି ଏଥିରେ ଏକ ଗଭୀର ମର୍ମ ନିହିତ ରହିଛି । ଏ ଦେଶର ଅର୍ଦ୍ଧାଧିକ ଲୋକ ଦାନା, କନା, ବାସ ପରି ମୌଳିକ ସୁବିଧାରୁ ବଞ୍ଚିତ ଥିଲାବେଳେ ଆମର ଯୋଜନା ସବୁ ସେମାନଙ୍କ ଠାରୁ ଦୂରରୁ ଦୂରକୁ ଘୁଞ୍ଚିଚାଲିଛି । କିନ୍ତୁ ଅସଲ ଭାରତ ସେମାନଙ୍କ ମଧ୍ୟରେ ହିଁ ରହିଛି । ସେମାନେ ଏ ଦେଶର ମୂଳପିଣ୍ଡ । ଉପର କଥାଟି ମାଧ୍ୟମରେ ଚିତ୍ତଭାଇ ଆମକୁ ଏହି କଥାଟି ମନେ ପକାଇ ଦେଇଥିଲେ ।

ଭାରତ ଜ୍ଞାନ ବିଜ୍ଞାନ ସମିତି ଆଜି ଦେଶରେ ଏକ ବଡ ଆନ୍ଦୋଳନ ରୂପେ ମୁଣ୍ଡ ଟେକୁଛି । ଓଡିଶାରେ ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ସବୁ ଜିଲ୍ଲାରେ ଅନେକ ସାଥି ହାତ ମିଳାଇଛନ୍ତି । ଉପରୁ ସଂଖ୍ୟା ଗଣିଲେ ହଜାର, ଲକ୍ଷ ହୋଇ ସଂଖ୍ୟାଗୁଡିକ ବିଶାଳକାୟ ମନେ ହେବ । କିନ୍ତୁ ଓଡିଶାର ଗାଁଟିଏ ଉପରେ ଏହାର ପ୍ରଭାବ 'ସମୁଦ୍ରକୁ ଶଙ୍ଖେପାଣି' ପରି ହୋଇଯିବ । ତେଣୁ ଆମେ ସମିତିର ଦର୍ଶନକୁ ବୁଝିବା ଓ ଏହା ଅନୁସାରେ ଚେଷ୍ଟା କରିବାକୁ ସଚେତନ ହେବା । ଯିଏ ଯେଉଁଠି ବି ସମିତି ସହ ସଂଶ୍ଳିଷ୍ଟ ରହିଛେ, ସମସ୍ତେ ଏହାକୁ ଏକ ମୂଳ ଆହ୍ୱାନ ରୂପେ ଗ୍ରହଣ କରିବା । ନିଜ ନିଜ ଜାଗାରେ ସ୍ୱାଧୀନତା ଦିବସରେ ସବୁ ପିଲାଙ୍କୁ ପତାକା ତଳକୁ ଡାକିବା । ସେହି ଦିନଟିରେ ଆମେ ପିଲାଙ୍କୁ ପତାକା କ'ଣ, କାହିଁକି ଓ କିପରି ହେଲା, ଏ ବିଷୟରେ ବୁଝାଇବା । 'ଜାତୀୟ ପତାକାର କାହାଣୀ' ସଙ୍କଳନଟିକୁ ଏଥିପାଇଁ ତିଆରି କରାଯାଇଛି । ଏଥିରୁ ଜଣେ ଧାରଣା ପାଇ ପାରିବେ ଯେ ଜାତୀୟ ପତାକାଟି କୌଣସି ଗୋଷ୍ଠୀର ନୁହେଁ । ଏହା ସବୁ ଲୋକଙ୍କର । ଆମର ଉଦ୍ୟମ ଏପରି ହେବା ଜରୁରୀ, ଯେପରି ହୋଟେଲରେ ବାସନ ମାଜୁଥିବା କାହ୍ନୁ ,ବାବୁଙ୍କ ଘରେ ପିଲା ଧରୁଥିବା ପିଙ୍କି, ଛେଳି ଚରାଉଥିବା ସନିଆ, ବାଉରୀ ସାହିର ପ୍ରଶାନ୍ତ ଓ ବସ୍‌ଷ୍ଟାଣ୍ଡରେ ଭିକ ମାଗୁଥିବା ସାନୁ ବି ଅନୁଭବ କରିବେ, ଜାତୀୟ ପତାକାଟି ଆମ ସମସ୍ତଙ୍କର । ଏହା ତଳେ ଆମ ସମସ୍ତଙ୍କର ସମାନ ଅଧିକାର ଓ ଦାୟିତ୍ୱ ରହିଛି । ମଣିଷ ମଣିଷ ଭିତରେ କୌଣସି ଭେଦଭାବ ନାହିଁ । ସମସ୍ତେ ମଣିଷ ପରି ଜିଇଁବାର ଅଧିକାର ଅଛି । ସମସ୍ତେ ଏକ ସ୍ୱରରେ ଗୀତ ଗାଇବେ, ପତାକାକୁ ସମ୍ମାନ ଦେଖାଇବେ ଓ ଖେଳିବେ ।

ଅନ୍ତତଃ ସ୍ୱାଧୀନତା ଦିବସରେ ବି ଯଦି ଏତିକି ହୋଇପାରିବ ତେବେ ଏହା ଅନେକ ଆଶା, ବିଶ୍ୱାସ ଆଣି ଦେଇପାରିବ । ଓଡିଶାର ଅଧିକାଂଶ ସାଥି ଏହି ଛୋଟ ଅଥଚ ଗଭୀର କାମଟି ପାଇଁ ଆଗ୍ରହ ଦେଖାଇବା ଓ ପ୍ରସ୍ତୁତ ହେବା ଆମ ପାଇଁ ଖୁସିର କଥା । ପ୍ରତି ଜିଲ୍ଲାରେ ଅତିକମ୍‌ରେ ଯଦି ଗୋଟିଏ ଜାଗାରେ ଏହାକୁ ଠିକ୍ ଭାବେ କରାଯାଇପାରିବ, ତେବେ ଏହା ସମିତି ଓ ଓଡିଶା ପାଇଁ ଲାଭଜନକ ହେବ । ଯେଉଁମାନେ ସମୟ ଅଭାବରୁ ଏଥର ପ୍ରସ୍ତୁତ ହୋଇପାରୁନାହାନ୍ତି, ଆସନ୍ତା ଦିନଗୁଡିକରେ ଏହାକୁ ମର୍ମର ସହ କରିପାରିବେ । ଠିକ୍ ଭାବେ କରାଯାଇପାରିଲେ, ଲକ୍ଷାଧିକ ସୁବର୍ଣ୍ଣ ଜୟନ୍ତୀ ପାଳନ ଠାରୁ ଗୋଟିଏ ଜାଗାର 'ପିଲାଙ୍କ ପତାକା ଶିବିର' ଅଧିକ ମଙ୍ଗଳକର ହୋଇପାରିବ ।

ସଙ୍କଳକ

# ଗୋଟିଏ ପତାକାର ଆକର୍ଷଣ...

ରାତି ପାହିଲେ ଅଗଷ୍ଟ ପନ୍ଦର । ବୋଉ ବାପା କଥାହୋଇ ଆଲମାରୀରୁ ଛରିମୁଣିଟିକୁ ବାହାର କଲେ । ତା' ଭିତରୁ ବାହାରକଲେ ଏକ ସୁନ୍ଦର ରଙ୍ଗବୋଳା ଖଦଡ କନା । ଏହାଥିଲା ଆମର ଜାତୀୟ ପତାକା-ତ୍ରିରଙ୍ଗା । ଗେରୁଆ, ଧଳା ଓ ସବୁଜର ଗାଢ ପଟି ଉପରେ ଗାଢ ନୀଳ ରଙ୍ଗର ଚକ୍ରଟିଏ ଝଟକୁଥାଏ । ରାନୁବୋଉ ଆଗରୁ ଆଲମାରୀରୁ କେତେଥର ଏପରି ଲୁଗାପଟା ବାହାର କରିବା ପିଲାଏ ଦେଖିଛନ୍ତି । କିନ୍ତୁ ଏହି କନାଖଣ୍ଡକ ପାଇଁ ତାଙ୍କର କେତେ ଆଦର ଓ ଯତ୍ନ । ଏହାକୁ ଯତ୍ନର ସହ ଖୋଲି ସେ ଟେବୁଲ ଉପରେ ବିଛାଇ ଦେଲେ । କାଳେ କେଉଁଠି ଖିଙ୍ଗିସା କି ଅସରପା କାଟି ପକାଇବେ... ଏଥିପାଇଁ ସେ ଏଥିରେ ଗନ୍ଧକର୍ପୂର ଗୁଳା ପକାଇ ରଖିଥିଲେ । ପତାକାଟି କେତୋଟି ଜାଗାରେ ଲୋଚାକୋଚା ହୋଇ ଯାଇଥାଏ । ରାନୁବୋଉ ଇସ୍ତ୍ରୀପେଡି ଚଳାଇ ଏହାକୁ ସତେଜ କରିଦେଲେ । ସେ ବେଶ୍ ସୁନ୍ଦର ଜଣା ପଡୁଥାଏ । ଏଥର ସେ ଏହାକୁ ଚାରିଭାଗ କରି ଟେବୁଲ୍ ଉପରେ ରଖିଦେଲେ । ନିଜର ଅନ୍ୟ କାମରେ ଲାଗିଲେ ।



ଘରେ ଏଣେ ପତାକାକୁ ନେଇ ପିଲାଙ୍କ ମନର ଭୋକ ବଢିଲା । ସେମାନେ ଏହାକୁ ପ୍ରଥମ ଥର ଦେଖୁ ନଥିଲେ । ଆଗରୁ ସେମାନେ କେତେକ ସରକାରୀ ଅଫିସ୍ ଉପରେ ଏହାକୁ ଉଡୁଥିବାର ଦେଖିଥିଲେ । ଭୋଟପ୍ରଚାର ବେଳେ ବା ମନ୍ଦିର ଉପରେ ପତାକା ଉଡିବାକୁ ବି ସେମାନେ ଦେଖିଥିଲେ । କିନ୍ତୁ ନିଜ ଘରେ ଏପରି ସୁନ୍ଦର ପତାକାଟିକୁ ଦେଖି ସେମାନେ ଏହା ପ୍ରତି ଅଧିକ କୁତୂହଳୀ ହୋଇଉଠିଲେ । କାଲି ସ୍କୁଲରେ ପତାକା ଉତ୍ତୋଳନ ହେବ । କିନ୍ତୁ ପତାକା କ'ଣ, ଏହାକୁ ଏପରି କାହିଁକି କରାଯାଇଛି, ଏହାକୁ କାହିଁକି ଉଡାଯାଏ..... ଏସବୁ ବିଷୟରେ ତ କେହି କିଛି କହି ନାହାନ୍ତି । ରାନୁ ଓ କୁନୁ ବୋଉଙ୍କ ପଛରେ ଲାଗିଗଲେ । ଦୁହିଁଙ୍କର ଏପରି ଆନନ୍ଦ ଓ ଆଗ୍ରହ ଦେଖି ବୋଉଙ୍କୁ ଖୁବ୍ ଖୁସି ଲାଗୁଥାଏ । ତେଣେ କେତେ କାମ ବାକି ପଡିଛି ।

ବୋଉ, ବାପା କଥା ହୋଇ ଠିକ୍ କଲେ, ସେମାନେ ପତାକା କଥାକୁ ବାଣ୍ଟିଦେବେ । ରନ୍ଧାବଢା ସରିବା ଯାଏଁ ବାପା ପିଲାଙ୍କୁ ପତାକା କ'ଣ ଓ କେଉଁଠୁ ଆରମ୍ଭ ହେଲା ବୁଝାଇବେ । ଦେଶ ବିଦେଶର ପତାକା ବିଷୟରେ କହିବେ । ରୋଷେଇ, ଖିଆପିଆ ସରିବା ପରେ ବୋଉ ପିଲାଙ୍କୁ ଆମ ତ୍ରିରଙ୍ଗା ପତାକା ବିଷୟରେ କହିବେ । ଆସନ୍ତାକାଲି ସକାଳେ ଘରେ ପତାକା ଉତ୍ତୋଳନ ବେଳେ ପିଲାଏ ପତାକା ଉତ୍ତୋଳନର ସଠିକ ବିଧିଗୁଡିକୁ ଶିଖିବେ । ଏହାପରେ ସମସ୍ତେ

ସ୍କୁଲର ପତାକା ଉତ୍ତୋଳନରେ ଭାଗ ନେବେ । ଏଥର ଆରମ୍ଭ ହେଲା ବାପାଙ୍କ ପାଳି । ସେ କେତୋଟି ପୁରୁଣା ପୋଥି ଓ ପତାକା ମାନଚିତ୍ର ଧରି ବସିଲେ । କୁନୁ ଓ ରାନୁ ତାଙ୍କ ସାମନାରେ ବସିଗଲେ ।

ବାପା ଆରମ୍ଭ କଲେ : ତୁମେ ଯେଉଁ ପତାକା ଦେଖି ଏତେ ଆଗ୍ରହୀ ହୋଇ ପଡ଼ିଛ, ଏହା ଆମ ଦେଶର ସବୁଠୁ ମୂଲ୍ୟବାନ ସମ୍ପତ୍ତି । ଦେଖିବାକୁ ସିନା ଏହା ଖଣ୍ଡିଏ ଖଦଡ଼ କନା, ଏହା ଉପରେ ସାରା ଦେଶର ମାନମହତ ନିର୍ଭର କରେ । ଦେଶର ଅନେକ ମୁଦ୍ରା ନଷ୍ଟ ହୋଇଗଲେ ବା ଚୋରି ହୋଇଗଲେ ଏହାକୁ ଦେଶବାସୀ ସହିଯାଇପାରନ୍ତି । ଦେଶର କିଛି ମୂଲ୍ୟବାନ ସମ୍ପତ୍ତିକୁ ହରାଇଲେ ବି ଚଳିଯିବ । କିନ୍ତୁ ପତାକାଟିର ମାନ ଖସିଗଲେ ସାରା ଦେଶରେ ଝଡ଼ ବହିଯାଏ । ଆମର ଏହି ଅନୁଭୂତି ଅଛି । ଆମର ଏହି ପତାକାଟିକୁ ଆଜିର ରୂପରେ ଦେଖିବାକୁ ଓ ଏହାକୁ ଉଡ଼ାଇବା ପଛରେ କେତେ ଲହୁଲୁହଭରା ଘଟଣା ଘଟିଛି । ଏହାକୁ ବୁଝିପାରିଲେ ପତାକା ପ୍ରତି ଆମର ଆଦର ଓ ସମ୍ମାନ ଆହୁରି ବଢ଼ିଯାଏ । ଏ ବିଷୟରେ ବୋଉ ତୁମକୁ ସବୁକଥା ବୁଝାଇ କହିବେ । ମୁଁ ଏଥର କହେ... ପତାକାର ଇତିହାସ ।

ଆଜି ଆମେ ଆମ ପତାକାଟିକୁ ଏତେ ଗୁରୁତ୍ୱ ଦେଉଛେ । ପୃଥିବୀର ପ୍ରତ୍ୟେକ ଦେଶରଏପରି ସ୍ୱତନ୍ତ୍ର ଧରଣର ପତାକା ରହିଛି । ପ୍ରତି ଦେଶ ତା'ର ଏହି ପତାକାକୁ ସବୁଠୁ ବେଶୀ ଭଲ ପାଏ । କାରଣ ଏହି କନା ଖଣ୍ଡିକ ସହିତ ଦେଶ ବା ଜାତିଟିର ଜୀବନ କାହାଣୀ ଓ ମାନ ମର୍ଯ୍ୟାଦା ଯୋଡ଼ାଥାଏ । ଏହି ସମ୍ପର୍କ ଏତେ ନିବିଡ଼ ଯେ ଏହାକୁ ଦେଶ ବା ଜାତିଟିର ଇତିହାସର 'ସଂକ୍ଷେପଲିପି' (ଶର୍ଟ୍ ହାଣ୍ଡ) ବୋଲି ବି କୁହାଯାଇଥାଏ । ପୃଥିବୀରେ ଏପରି ଗୋଟିଏ ବି ଦେଶ ନାହିଁ, ଯାହାର କାହାଣୀ ଶୁଣି ଏହାର ବାସିନ୍ଦାମାନେ ପତାକାଟିକୁ ସମ୍ମାନର ସହ ଦେଖନ୍ତି ନାହିଁ । ଯେ କୌଣସି ଲୋକ ତା' ଦେଶର ପତାକାଟିକୁ ଦେଖିଲେ ଉଣା ଅଧିକେ ଉଲୁସି ଉଠିଥାଏ । ଇଂରାଜୀରେ ଗୋଟିଏ ବୋଲି ଅଛି, ''ଯେଉଁଲୋକ ଜୀବନରେ କେବେ ବି ନିଜ ଦେଶରପତାକାକୁ ଦେଖି ଉଲୁସି ଉଠେ ନାହିଁ, ତା' ପ୍ରତି କିଆଁ ଈର୍ଷ୍ୟା କରିବ ?'' ଏହା ପ୍ରତ୍ୟେକ ଦେଶ ପାଇଁ ଏକ ସଙ୍କେତର କାମ କରିଥାଏ । କିନ୍ତୁ ଭାବିଲ, ଏହା କିପରି ଆରମ୍ଭ ହେଲା ଓ ଦେଶ ବିଦେଶରେ ଏପରି ବିବିଧ ରକମର ପତାକା ପ୍ରଚଳିତ ହେଲା । ଚାଲ ଖୋଜିବା ତା'ର ତିଆରି କାହାଣୀକୁ ।

## ପତାକାର ଆରମ୍ଭ

ପ୍ରକୃତରେ, ପତାକା କେବେ, କିପରି ଓ କେଉଁଠି ଆରମ୍ଭ ହେଲା ତା'ର କିଛି ନିର୍ଦ୍ଦିଷ୍ଟ ପ୍ରମାଣ ନାହିଁ । ଆଦିମ ମଣିଷ ଜଙ୍ଗଲରେ ରହୁଥିଲାବେଳେ ତା ପାଇଁ ପତାକା ବୋଲି କିଛି ବି ନଥିଲା । କାରଣ ତା' ଜୀବନରେ କନାର ବ୍ୟବହାର ଅନେକ ଡେରିରେ ସମ୍ଭବ ହୋଇପାରିଥିଲା । ମଣିଷ ଆଉ ଏକ ମଣିଷକୁ ଚିହ୍ନିବା ପାଇଁ ତା' ଦେହର ଗଠନ ହିଁ ଯଥେଷ୍ଟ ଥିଲା । ଦେହ, ମୁହଁର ସ୍ୱତନ୍ତ୍ର ଗଠନକୁ ଲକ୍ଷ୍ୟ କରି ସେ ଲୋକଟିକୁ ମନେ ରଖୁଥିଲା । କ୍ରମଶଃ ମଣିଷମାନେ କାମ ଓ ଚଳଣିରେ ସୁବିଧା ପାଇଁ ଦଳରେ ରହିବାକୁ ଆରମ୍ଭ କଲେ । ବାସବାସର ସ୍ଥିରତା ସାଙ୍ଗକୁ ମଣିଷଙ୍କର

ବଡ ବଡ ବସତିସବୁ ନଈକୂଳରେ ଗଢି ଉଠିଲା । ବିଭିନ୍ନ ଜାଗାର ଏହି ବସତିକୁ ଆମେ ସେହି ନଈକୂଳର ସଭ୍ୟତା ରୂପେ ମନେ ରଖିଛେ । ସେମାନେ ପରସ୍ପରର ବସତି, ଚାଲିଚଳଣ ଓ ଆସବାବପତ୍ରକୁ ଆଧାର କରି ଠାବ କରି ପାରୁଥିଲେ । କ୍ରମଶଃ ବଢି ବଢି ଏସବୁ ବଡ ସଭ୍ୟତାରେ ପରିଣତ ହେଲା । ନିଜ ଲୋକଙ୍କର କଳା, କାରିଗରୀ, ବିଜ୍ଞାନ, ଶିଳ୍ପ, ସଂସ୍କୃତିରେ ବିକାଶକୁ ଆଧାର କରି ସଭ୍ୟତାଟିର ନାଁ ବଢିଲା । ଗୋଟିଏ ସଭ୍ୟତାର ଲୋକ ଆଉ ଏକ ସଭ୍ୟତାର ଲୋକଙ୍କୁ ଏସବୁ ମାଧ୍ୟମରେ ଜାଣିଲେ ଓ ପରସ୍ପରର ଉନ୍ନତିକୁ ତୁଳନା କଲେ । ପରସ୍ପର ମଧ୍ୟରେ ଭାବ ଓ କଳାର ବିନିମୟ ହେଲା । ପ୍ରତି ସଭ୍ୟତା ନିଜର କଳା କାରିଗରୀକୁ ନେଇ ଗର୍ବ କଲା ।



ଏକ ପ୍ରାଚୀନ ପତାକା



ଇରାନର ୫,୦୦୦ ବର୍ଷ ପୁରୁଣା ଏକ ଧାତବ ପତାକା

ଏହି ସଭ୍ୟତାଗୁଡିକ ଭିତରେ ଲୋକେ ନିଜ ନିଜ ଭିତରେ କଳା ଓ ସଂସ୍କୃତିର ମେଳକୁ ଆଧାର କରି ଅଲଗା ଅଲଗା ଦେଶର ସୀମା ଟାଣିଲେ । ଇଲାକାଟିକୁ ଅମୁକ ଦେଶ ଓ ଏଠାକାର ଲୋକଙ୍କୁ ଦେଶଟିର ଅଧିବାସୀ ବା ଦେଶବାସୀ କୁହାଗଲା । କିନ୍ତୁ ଏହି ଦେଶର ସାମଗ୍ରିକ ବ୍ୟବସ୍ଥାକୁ ବୁଝାଇବା ପାଇଁ କେବଳ ଦେଶ ବା ଜାତିର ନାଁଟି ଯଥେଷ୍ଟ ନଥିଲା । କେତେକ ଅଞ୍ଚଳରେ ଲୋକେ ନିଜ ଦେଶର ନାଁ ଅପେକ୍ଷା ନିଜ ଦେଶର ବିଭିନ୍ନ ବଳିଷ୍ଠ ବ୍ୟକ୍ତି ବା କିର୍ତ୍ତୀକୁ ନେଇ ଅଧିକ ପ୍ରେରଣା ଓ ସ୍ୱାଭିମାନ ପାଉଥିଲେ । ଦେଶଟି ବି ସେମାନଙ୍କ ନାଁ ବା ବ୍ୟକ୍ତିତ୍ୱକୁ ଆଧାର କରି ଅଧିକ ପରିଚିତ ଥିଲା । ତେଣୁ ଅଞ୍ଚଳଟିରେ ସେହି ବ୍ୟକ୍ତି ବା କିର୍ତ୍ତୀକୁ ଗୌରବର ଏକ ପ୍ରତୀକ ରୂପେ ଦେଖା ଯାଉଥିଲା । ଏପରି ଏକ ପୃଷ୍ଠଭୂମି ବା ବୁଝାମଣାକୁ ନେଇ ପତାକା ପରମ୍ପରା ଜନ୍ମ ନେଇଥିଲା ବୋଲି କୁହାଯାଇପାରିବ ।



ଖ୍ରୀ.ପୂ. ୩୨୦୦ ର ଏକ ମିଶରୀୟ ପତାକା



ଖ୍ରୀ.ପୂ. ୨୩୦୦ର କଂସା ଓ ରୁପା ପତାକା(ଏସିଆ)

## ପତାକାର କ୍ରମବିକାଶ

ପତାକାର ଆରମ୍ଭ ଏପରି ବି ହୋଇଥାଇପାରେ । ଆମର ଦୂର ପୂର୍ବଜ (ଆଦିମ ମଣିଷ)ମାନେ ଆକସ୍ମିକ ଭାବେ ନିଆଁର ଆବିଷ୍କାର କଲାପରି ପତାକା ପରମ୍ପରାକୁ ବି ଆବିଷ୍କାର କରିଥାଇପାରନ୍ତି । ଦୂର ଜାଗାରୁ ସଙ୍କେତ ଦେବା ପାଇଁ କିଏ ହୁଏତ ଗୋଟିଏ ବାଡି ଅଗରେ

ଖଣ୍ଡିଏ ପଶୁ ଚମଡା ଟାଙ୍ଗିଦେଇ ହଲାଇ ଥାଇପାରେ । ଏହାର କେତେ ଶତକ ପରେ ଖ୍ରୀ.ପୂ. ୪୦୮ରେ ସାଲାମିଶ୍ ସମୁଦ୍ରଯୁଦ୍ଧବେଳେ ଗ୍ରୀକ୍ ସେନାପତି ଥେମିଷ୍ଟୋକଲସ୍ ଗୋଟିଏ ନାଲିଆ କନାକୁ ପତାକା ପରି ବ୍ୟବହାର କରିଥିଲେ । ଗୋଟିଏ କାତ ଅଗରେ ନାଲି କନାଟିକୁ ବାନ୍ଧି ସେ ଦଳକୁ ଆଗେଇ ନେଇଥିଲେ ଓ ଶେଷରେ ସେମାନେ ପାର୍ସୀ ଜଳବାହିନୀକୁ ଅକ୍ତିଆର କରିଥିଲେ ।

ଏହାର ଅନେକ ଆଗରୁ ଏସିଆର ବିଶାଳ ସଭ୍ୟତା ସବୁ ଏ ପ୍ରକାରର ବିବିଧ କୌଶଳ ବ୍ୟବହାର କରୁଥିଲେ । ଏଗୁଡିକର ନାଁ ଥିଲା 'ଭେକ୍ସିଲଏଡ୍' । ଏଗୁଡିକୁ ସେମାନେ କାଠ, ଧାତୁ ଚମଡା ଓ ଅନ୍ୟ ବସ୍ତୁରେ ତିଆରି କରୁଥିଲେ । ଏଥିରେ ଗୋଟିଏ ଦଣ୍ଡର ଅଗରେ ଗୋଟିଏ ପ୍ରତୀକ ରହୁଥିଲା । ମୁଖ୍ୟତଃ ବିଭିନ୍ନ ଦେବଦେବୀଙ୍କ ଛବି ବା ସଙ୍କେତକୁ ଏଥିରେ ରଖାଯାଉଥିଲା । ଲୋକେ ବିଶ୍ୱାସ କରୁଥିଲେ, ଏହା ଥିଲେ ସେମାନେ ନିଶ୍ଚିତ ରୂପେ ସୁରକ୍ଷିତ ରହିବେ ଓ ଯୁଦ୍ଧରେ ବିଜୟୀ ହେବେ ।


ପାଞ୍ଚଟି ରଙ୍ଗର
ସାମରିକ ପତାକା


ଏକ ପୁରାତନ
ବିଞ୍ଚଣା ପତାକା


୨୦୦୦ ବର୍ଷ
ପୁରୁଣା ପତାକା

ପୁରାତନ ଚୀନ୍‌ର କେତେକ ପତାକା

ଆଜି ଆମେ ଯେଉଁ ପତାକାସବୁ ଦେଖୁଛେ, ସେଗୁଡିକ ସାଧାରଣତଃ ଖଣ୍ଡିଏ ଲେଖାଏଁ କନା ଓ ଏହାକୁ ଗୋଟିଏ ଲମ୍ବା ବାଡି ଦେହରେ ବନ୍ଧା ହେଉଛି । ଏହି ପରମ୍ପରାଟି ଖ୍ରୀଷ୍ଟପୂର୍ବ ୩୦୦୦ ମସିହା ବେଳକୁ ଚୀନ୍ ଦେଶରେ ଆରମ୍ଭ ହୋଇଥିଲା । ଏଗୁଡିକୁ ମୁଖ୍ୟତଃ ରେଶମ କନାରେ ବନା ଯାଉଥିଲା ଏବଂ ଏହାକୁ ଯୁଦ୍ଧ ଓ ଧର୍ମ କାମ ପାଇଁ ବ୍ୟବହାର କରାଯାଉଥିଲା ।

ଆଗର ଲୋକଙ୍କ ପରି ରୋମର ଲୋକେ ନିଜର ପତାକାଗୁଡିକୁ ଅତି ପବିତ୍ର ମନେ କରୁଥିଲେ । ପ୍ରଥମେ ପ୍ରଥମେ ସେମାନଙ୍କ ସୈନ୍ୟମାନେ ଏଥିରେ ବିଭିନ୍ନ ପଶୁପକ୍ଷୀଙ୍କ ପ୍ରତିମୂର୍ତ୍ତି ବ୍ୟବହାର କରୁଥିଲେ । କିନ୍ତୁ ଖ୍ରୀ.ପୂ. ୧୦୪ ପରେ ସେମାନେ ଛଞ୍ଚାଣ ପ୍ରତିମୂର୍ତ୍ତି ସାଙ୍ଗକୁ ଚାରିକୋଣିଆ କନା ବି ବ୍ୟବହାର କରିବାକୁ ଆରମ୍ଭ କଲେ । ବନ୍ଦୀ କରି ଆଣିଥିବା ଲୋକଙ୍କୁ ମତାଇବା ପାଇଁ ସେମାନେ ପରେ ପରେ ପତାକାରେ ନିଜ ଶାସକମାନଙ୍କର ପ୍ରତିମୂର୍ତ୍ତିକୁ ବି ବ୍ୟବହାର କଲେ । ଫଳରେ ପତାକାର ରୂପ ଓ କାମରେ ଧର୍ମ ସାଙ୍ଗକୁ ରାଜନୀତିର ବି ପ୍ରଭାବ ପଡିଲା ।

ରୋମ ଦେଶର ପ୍ରାଚୀନ ପତାକା



ଫଳକଯୁକ୍ତ ପତାକା



ଗରୁଡ ପତାକା



ଛଞ୍ଚାଣ ପତାକା



କନ୍‌ଷ୍ଟାଣ୍ଟାଇନ୍‌ଙ୍କ ପତାକା

ଖ୍ରୀଷ୍ଟଧର୍ମର ବିକାଶ ସହ ଏହି ପରମ୍ପରାରେ କେତେକ ବଦଳ ଆସିଲା । ଶାସକ କନ୍‌ଷ୍ଟାଣ୍ଟାଇନ୍ ନିଜର ଚିହ୍ନ ଜାଗାରେ ଯୀଶୁଖ୍ରୀଷ୍ଟଙ୍କର ପ୍ରତିମୂର୍ତ୍ତି ବା 'ଖ୍ରୀଷ୍ଟ' ଶବ୍ଦର କିଛି ପ୍ରଥମ ଗ୍ରୀକ୍ ଅକ୍ଷର, ଯଥା : *X* (ସାଇ), *P* (ରୋ) ଆଦିକୁ ଲଗାଇଲେ । ଏହାକୁ ଦେଖିଲାକ୍ଷଣି ଲୋକଙ୍କ ମନରେ ଅଧିକ ପୁଲକ ଜାତ ହେଲା ଓ ସେମାନେ ଅଧିକ ଉତ୍ସାହରେ କାମରେ ମାତିଲେ । ଆଉ କେତେକ ପତାକାରେ 'କ୍ରୁଶ' ଚିହ୍ନ, ଅନ୍ୟ ଧର୍ମର ସଙ୍କେତ, ବିଭିନ୍ନ ଋଷିଙ୍କର ଛବି ବି ରହିଲା । ବିଭିନ୍ନ ଯୁଦ୍ଧବେଳେ ଲୋକ ଓ ସୈନ୍ୟଙ୍କୁ ମତାଇବାରେ ଏଗୁଡିକ ବେଶ ପ୍ରଭାବଶାଳୀ ହୋଇପାରିଲା । ଭାରତର ବିଭିନ୍ନ ପୁରାଣ ଓ ଗ୍ରନ୍ଥରେ ଏପରି ବିଭିନ୍ନ ସଙ୍କେତଧାରୀ ଧ୍ୱଜାର ବ୍ୟବହାରକୁ ଆମେ ଦେଖିବାକୁ ପାଇଥାନ୍ତି । ବଡ ବଡ ରଥ ଉପରେ ଉଡୁଥିବା ଏହି ପତାକାଗୁଡିକ ସବୁ ଲୋକଙ୍କ ଦୃଷ୍ଟି ଆକର୍ଷଣ କରିପାରୁଥିଲେ ଓ ସେମାନେ ନିଜ ନିଜ ନେତାଙ୍କୁ ସୁବିଧାରେ ଠାବ କରି ପାରୁଥିଲା । ବିଭିନ୍ନ ସେନା ନିଜ ନିଜର ସ୍ୱତନ୍ତ୍ର ପତାକା ବ୍ୟବହାର କରୁଥିଲେ । ଆମ ଦେଶର ଅନେକ ପୌରାଣିକ କାହାଣୀରେ ଏପରି ବର୍ଣ୍ଣନା ସବୁ ରହିଛି ।



(ପ୍ରାଚୀନ ଇସ୍‌ଲାମ୍ ପତାକା)

ଷଷ୍ଠ ଶତାବ୍ଦୀବେଳକୁ ଆରବ ଦେଶଗୁଡିକରେ ଇସ୍‌ଲାମ ଧର୍ମ ନୂଆରେ ମୁଣ୍ଡ ଟେକିଲା । ତାଙ୍କର ଧର୍ମଗୁରୁ ସବୁଜ ପଗଡି ସାଙ୍ଗକୁ କଳାଧଳା କନାର ପୋଷାକ ବ୍ୟବହାର କରୁଥିଲେ ।

ଏହା ତାଙ୍କର ଶିଷ୍ୟମାନଙ୍କୁ ବହୁତ ପ୍ରଭାବିତ କରିଥିଲା । ତାଙ୍କ ପରେ ନିଜ ପତାକାରେ ସେମାନେ ଏହି ରଙ୍ଗଗୁଡ଼ିକୁ ହିଁ ପ୍ରାଧାନ୍ୟ ଦେଲେ । କ୍ରମଶଃ ଇସ୍‌ଲାମ୍ ଧର୍ମ ମଧ-ଏସିଆ ଓ ଉତ୍ତର-ଆଫ୍ରିକା ଆଡ଼କୁ ପ୍ରସାରିତ ହେଲା । ଏଥି ସହିତ ସେହି ଅଞ୍ଚଳର ବିଭିନ୍ନ ଶକ୍ତିଶାଳୀ ଶାସକ ଓ ତାଙ୍କର ପରିବାରବର୍ଗ ଏପ୍ରକାରର ନିର୍ଦ୍ଦିଷ୍ଟ ରଙ୍ଗକୁ ଆବୋରି ନେଲେ । ସେମାନେ ମୁଖ୍ୟତଃ ଲାଲ, ଧଳା, କଳା ଓ ସବୁଜ ରଙ୍ଗକୁ ଆଦର କଲେ । ଧୀରେ ଧୀରେ ସେମାନଙ୍କ ଯୁଦ୍ଧ ପତାକାଗୁଡ଼ିକରେ ବିଭିନ୍ନ ଜଟିଳ ଅଙ୍କନ ସାଙ୍ଗକୁ ଆରବୀ ଲେଖା ସବୁ ରହିଲା । ଏଗୁଡ଼ିକର କଳାକୃତୀ ଉଚ୍ଚକୋଟୀର ଓ ଆକର୍ଷଣୀୟ ହେଉଥିଲା ।

## ପ୍ରାକ୍ ମଧଯୁଗର ପତାକା

ମଧ୍ୟଯୁଗ ସାରା ପୃଥିବୀର ବିଭିନ୍ନ ଭାଗରେ ଫଳକ ଲାଗିଥିବା ପତାକା (ଭେକ୍‌ସିଲଏଡ଼)ମାନ ଦେଖିବାକୁ ମିଳିଥିଲା । ଏଗୁଡ଼ିକ ମଧରେ ଗୋଟିଏ ଜାତିର ପତାକା ସେହି ସମୟରେ ଯୁଦ୍ଧ କ୍ଷେତ୍ରଗୁଡ଼ିକରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ଏହାର ନାମ ଥିଲା ‘ରାକ୍ଷସ ପତାକା’ (ଡ୍ରାଗନ ଫ୍ଲାଗ୍) । ଏହା ଏକ ଲମ୍ବା ଥଳୀ ପରି ଦେଖାଯାଉଥିଲା । ଏହାର ଗୋଟିଏ ମୁଣ୍ଡରେ ଛୋଟ ପେଁକାଳୀ ପରି ବାଜାଟିଏ ରହୁଥିଲା । ଏହା ମଧଦେଇ ପବନ ଗତି କଲାବେଳେ ଏହା ପ୍ରବଳ ଚିତ୍କାର କରୁଥିଲା । ୧୦୬୬ ମସିହାରେ ହଷ୍ଟିଙ୍ଗ୍‌ସ ଯୁଦ୍ଧ ସମୟରେ ଇଂରେଜ ସୈନ୍ୟମାନେ ଏହି ରାକ୍ଷସ ପତାକା ବ୍ୟବହାର କରିଥିବାର ପ୍ରମାଣ ମିଳୁଛି ।


(ରାକ୍ଷସ ପତାକା)

ଏହି ସମୟରେ ୟୁରୋପୀୟ ଯୁଦ୍ଧଗୁଡ଼ିକରେ ଆଉ କିଛି ନୂଆ ରକମର ପତାକା ଦେଖିବାକୁ ମିଳିଥିଲା । ଏଗୁଡ଼ିକର ଆକାର ବେଶ ଛୋଟ ଥିଲା ଓ ଏହା ‘ନାଇଟ୍’ ଉପାଧିରେ ଭୂଷିତ ଅଶ୍ୱାରୋହୀ ଯୋଦ୍ଧାମାନଙ୍କ ବର୍ଚ୍ଛା ଦେହରେ ଲାଗୁଥିଲା । ଏହା ଉପସ୍ଥିତିରେ ବର୍ଚ୍ଛାଟି ବେଶ୍ ଆକର୍ଷଣୀୟ ମନେ ହେଉଥିଲା ଓ ଯୋଦ୍ଧା ଅଧିକ ଉତ୍‌ଫୁଲ୍ଲ ଜଣାପଡୁଥିଲେ । ଏମାନଙ୍କ ଅଧୀନରେ ରହି ଯେଉଁ ସୈନ୍ୟମାନେ ଯୁଦ୍ଧ କରୁଥିଲେ, ସେମାନଙ୍କୁ ସୁରକ୍ଷା ଓ ମନବଳ ଯୋଗାଇ ଦେବାପାଇଁ ଆଉ ଏକରକମର ପତାକା ବ୍ୟବହାର କରାଯାଉଥିଲା ।

୧୧୩୮ ମସିହାରେ ଇଂଲଣ୍ଡରେ ଷ୍ଟାଣ୍ଡାର୍ଡ୍ ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧରେ ସୈନ୍ୟମାନେ ଏହି ଧରଣର ପତାକା ବ୍ୟବହାର କରିଥିଲେ, ଯେଉଁଥିରେ ତିନି ଜଣ ଇଂରାଜୀ ସାଧୁଙ୍କର ଛବି ରହିଥିଲା । ୫୦୭ ଖ୍ରୀଷ୍ଟାବ୍ଦରେ ଭିଲି ଯୁଦ୍ଧ ହୋଇଥିଲା । ଏହାପରେ ୮୫୦ ବର୍ଷ ଧରି ଫ୍ରାନ୍‌ସ୍‌ର ସୈନ୍ୟମାନେ ନୀଳ ରଙ୍ଗର ପତାକା ବ୍ୟବହାର କରିଥିଲେ । ଏହାପଛରେ ବି ଏକ ଧର୍ମବିଶ୍ୱାସ ରହିଥିଲା । ସେଣ୍ଟ ମାର୍ଟିନ୍ କୁଆଡେ ଜଣେ ଭିକାରୀଙ୍କ ସହ ଏପରି ଏକ ନୀଳ କନା ବାଣ୍ଟି ଚଳିଥିଲେ ।

ଏପରି ଗଭୀର ଧର୍ମଭାବର ଆଉ ଏକ ପ୍ରଭାବ ଦେଖିବାକୁ ମିଳିଥିଲା ସ୍ପେନ୍‌ରେ । ଏଠାରେ ଆଗରୁ ଜଙ୍ଗଲୀ ଲୋକ ବସବାସ କରୁଥିଲେ । ଏମାନେ ସମସ୍ତେ ମୁସ୍‌ଲିମ୍ ଧର୍ମାବଲମ୍ବୀ ଥିଲେ । କିନ୍ତୁ ଏହି ପତାକାଧର୍ମୀ ଧର୍ମପ୍ରଚାର ମାଧ୍ୟମରେ କ୍ରମେ ଏଠାରେ ଖ୍ରୀଷ୍ଟଧର୍ମ ପ୍ରଭାବଶାଳୀ ହୋଇଉଠିଥିଲା । ପ୍ରାୟ ୧୪୯୨ ମସିହା ବେଳକୁ ଏହା ଏକ ଖ୍ରୀଷ୍ଟଧର୍ମୀ ଦେଶ ହୋଇଯାଇଥିଲା ।



ଚାର୍ଲ୍‌ମାନ୍‌ଙ୍କ ଓରିଫ୍ଲେମ୍

ଚେଙ୍ଗିଜ୍ ଖାନ୍‌ଙ୍କ ପତାକା

ରାଭେନ୍ ପତାକା

ଏହି ସମୟରେ କେନ୍ଦ୍ରୀୟ ୟୁରୋପରେ ଆଉ ଏକ ଐତିହାସିକ ପତାକା ଉଡିବାକୁ ଆରମ୍ଭ କରିଥିଲା । ଏହି ଗାଢ ନାରଙ୍ଗୀ-ଲାଲ୍ ରଙ୍ଗର ପତାକାଟିର ନାଁ ରହିଲା 'ଚାର୍ଲ୍‌ମାନ୍‌ଙ୍କ ଓରିଫ୍ଲେମ୍' । ସେହିକାଳରେ ଏହା ବହୁଳ ଭାବରେ ବ୍ୟବହୃତ ହୋଇଥିଲା । ଚାର୍ଲ୍‌ମାନ୍‌ଙ୍କ ରାଜତ୍ୱର କେତେ ଶତାବ୍ଦୀ ପରଯାଏଁ ଏହି ପତାକାର ଗୁରୁତ୍ୱ ରହିଲା । ଏହି ସମୟରେ ଆଉ ଦୁଇଟି ପତାକା ଏହାପରି ନାଁ କରିଥିଲା । ଏଥିରୁ ଗୋଟିଏ ଥିଲା ରାଭେନ୍ ପତାକା- ଏହାକୁ ଭାଇକିଂ ଆକ୍ରମଣକାରୀମାନେ ୯ମ ଶତାବ୍ଦୀରେ ୟୁରୋପରେ ବ୍ୟବହାର କରିଥିଲେ । ଆରଟିକୁ ମୋଗଲ ନେତା ଚେଙ୍ଗିଜ୍ ଖାନ୍ ବ୍ୟବହାର କରିଥିଲେ । ଏହାକୁ ଉଡାଇ ୧୩ଶ ଶତାବ୍ଦୀରେ ସେ ଏସିଆର ବିଭିନ୍ନ ଦେଶକୁ ଦଖଲ କରିନେଇଥିଲେ । ଚେଙ୍ଗିଜ୍ ଖାନ୍‌ଙ୍କ ଭାରତ ଆକ୍ରମଣ ବିଷୟ ସହ ଆମେ ଊଣା ଅଧିକେ ପରିଚିତ ଅଛେ ।

## ମଧ୍ୟଯୁଗର ସୁନେଲି ପତାକା



(ମଧ୍ୟଯୁଗର ଏକ ରକ୍ତିମ ପତାକା)

ମଧ୍ୟଯୁଗ ଯାଏଁ ପତାକା ସବୁ ରାଜା ଓ ଉଚ୍ଚ ବଂଶର ଲୋକଙ୍କର ଆଡମ୍ବରର ଅଂଶ ବିଶେଷ ଥିଲା । ସାଧାରଣ ଲୋକମାନେ କେବଳ ସାଧୁମାନଙ୍କ ଛବି ବା ପ୍ରତିମୂର୍ତ୍ତି ଥିବା ପତାକା ସବୁକୁ ଭୋଜିଭାତ ବା ଯୁଦ୍ଧବେଳରେ ହିଁ ବ୍ୟବହାର କରି ପାରୁଥିଲେ । ୧୧ଶ ଶତାବ୍ଦୀ ବେଳକୁ ୟୁରୋପୀୟ ଦେଶଗୁଡ଼ିକରେ ବ୍ୟବସାୟୀ ଓ ଶିଳ୍ପୀମାନେ ହାତମିଳାଇଲେ । ସେମାନେ ସୁନା, ରୂପା ଆଦି ରଙ୍ଗକୁ ବ୍ୟବହାର କରି ଧୀରେ ଧୀରେ ପତାକା ବଜାରକୁ ନିଜ ନିୟନ୍ତ୍ରଣକୁ ନେବାକୁ ଆରମ୍ଭ କଲେ । ସୁନାରୀ, ଲୁଗା ବିକାଳୀ ଓ ମଦ ବେପାରୀମାନେ ନିଜ ନିଜ ପତାକାରେ ସ୍ୱତନ୍ତ୍ର ରଙ୍ଗ ଓ ଚିହ୍ନ ଦେଲେ ।

### ଉଚ୍ଚବଂଶର ପ୍ରଭାବ

ଏଥର ପତାକା ତିଆରି ଏକ ନୂଆ ମୋଡ ନେଲା । ୧୦୬୬ ମସିହା ବେଳକୁ ହଷ୍ଟିଙ୍ଗସ୍ ଯୁଦ୍ଧ ହେଲା । ସେ ସମୟର ଯୁଦ୍ଧବେଳେ ଉଭୟ ପକ୍ଷ ନିଜ ନିଜର ପତାକା ଧରି ଯୁଦ୍ଧ କରୁଥାନ୍ତି । ଇଂରେଜମାନେ ନିଜର ବିଖ୍ୟାତ 'ରାକ୍ଷସ ପତାକା' ଧରି ଲଢୁଥାନ୍ତି । ଏଣେ ଜର୍ମାନବାସୀଙ୍କ ପତାକା ଉପରେ 'କ୍ରଶ୍' ଚିହ୍ନଥାଏ । ଉଭୟ ଦଳକୁ ସହଜରେ ବାରି ହେଉଥାଏ । କିନ୍ତୁ ସମସ୍ତେ ମୁଣ୍ଡରେ ମୁଖା (ହେଲ୍‌ମେଟ୍) ଲଗାଇ ଲଢୁଥାନ୍ତି । ତେଣୁ କିଏ ଜିଇଁଛି ବା ମଲା ଜାଣିବା ସହଜ ନଥାଏ । ଘମାଘୋଟ ଲଢେଇ ଚାଲିଥିବା ସମୟରେ ବିଜେତା ଦଳର ସେନାପତି ଉଇଲିଅମ୍ ନିଜର ମୁଖାକୁ ଟେକି ନିଜର ମୁହଁକୁ ଦେଖାଇ ନିଜେ ଜିଇଁଥିବାର ପ୍ରମାଣ ଦେଲେ । ଏହା ତାଙ୍କର ସୈନ୍ୟମାନଙ୍କ ମଧ୍ୟରେ ପ୍ରଚଣ୍ଡ ବିଶ୍ୱାସ ଆଣିଦେଲା । ଏହି ପରିପ୍ରେକ୍ଷୀରେ ପତାକା ଅପେକ୍ଷା ତାଙ୍କର ଏହି ଆଚରଣଟି ଅଧିକ ଗୁରୁତ୍ୱପୂର୍ଣ୍ଣ କାମ ଦେଲା । ଏଯାଏଁ ଅଶ୍ୱାରୋହୀ ଯୋଦ୍ଧାମାନେ ଏହାକୁ ନେଇ ଅଡୁଆରେ ପଡୁଥିଲେ । ସେମାନଙ୍କ ମୁହଁ ଢଙ୍କା ହୋଇ ରହୁଥିବାରୁ ସେମାନଙ୍କୁ ଚିହ୍ନି ହେଉ ନଥିଲା ।

କିନ୍ତୁ ଏହା ପରଠାରୁ ଆଉ ଏକ ବିଧି ଆରମ୍ଭ ହୋଇଗଲା । ଏବେଠାରୁ ଯୋଦ୍ଧାଙ୍କର ଢାଲ ଉପରେ କେତେକ ସାଙ୍କେତିକ ଚିହ୍ନ ରହିଲା । ଖାଲି ଢାଲ ନୁହେଁ, [illegible] ଆଦି ପୋଷାକ ଓ ପତାକା ଉପରେ ମଧ୍ୟ ଏପରି ଚିହ୍ନ ସବୁ ରଖାଗଲା । ୧୦୯୬ ମସିହା ବେଳକୁ ପାଲେଷ୍ଟାଇନ୍‌ର ବିଭିନ୍ନ ପବିତ୍ର ସ୍ଥାନକୁ ଇସ୍‌ଲାମ୍‌ଧର୍ମୀଙ୍କ କବଳରୁ ମୁକୁଳାଇବା ପାଇଁ ଖ୍ରୀଷ୍ଟିଆନ୍ ଆକ୍ରମଣ ହୋଇଥିଲା । ଏହି ଯୁଦ୍ଧବେଳେ ସୈନ୍ୟମାନଙ୍କ ପୋଷାକପତ୍ର, ଅସ୍ତ୍ରଶସ୍ତ୍ର ଓ ପତାକା ଉପରେ



ସୁଲ୍‌ତାନ୍ ସାଲାଦିନ୍‌ଙ୍କ ଛଞ୍ଚାଣ

ଏକାରକମର ଛାପ ସବୁ ରହିଥିଲା । ୧୧୫୦ ମସିହାବେଳକୁ ଏପରି ବିଭିନ୍ନ ସେନାବାହିନୀ ଓ ପତାକାରେ ଥିବା ଚିହ୍ନଗୁଡିକୁ ଏକ ନିର୍ଦ୍ଦିଷ୍ଟ ସ୍ୱୀକୃତି ଦେବାପାଇଁ ଚେଷ୍ଟା କରାଗଲା ।

ବିଭିନ୍ନ ପ୍ରକାରର ଖ୍ରୀଷ୍ଟିଆନ୍ ସେନାବାହିନୀ ଥିଲା । ଏ ସମସ୍ତଙ୍କ ପାଇଁ ଠିକ୍ କରାଗଲା, ସମସ୍ତଙ୍କ ପତାକା ଉପରେ 'କ୍ରଶ' ଚିହ୍ନ ରହିବ । ତଥାପି କାମ ବାକି ରହିଲା । ବଡ ବଡ ସେନାବାହିନୀଗୁଡିକ ପାଇଁ ପତାକାର ରଙ୍ଗ ଅଲଗା ରଖିବାକୁ ହେଲା । ଇଂଲଣ୍ଡ, ଫ୍ରାନସ୍ ଓ ଫ୍ଲେମିଶ୍ ସେନାଙ୍କ ପତାକା ଅଲଗା ରଙ୍ଗ ପାଇଲା ।

ଖାଲି ରଙ୍ଗ ନୁହେଁ, ପତାକାଗୁଡିକର ଆକାରରେ ବି ଫରକ ରହିଲା । କ୍ରମଶଃ ଆଗର ବହୁଲାଞ୍ଜିଆ ପତାକା ବଦଳରେ ଅଲଗା ଆକୃତିକୁ ପସନ୍ଦ କରାଗଲା । ଛୋଟ, ମୁନିଆ ଆକାରର ତିନିକୋଣିଆ ପତାକା (ପେନନ୍), ଲମ୍ବାଳିଆ ପତାକା (ପେନାଣ୍ଟ) ଓ ଆୟତାକାର ବା ବର୍ଗାକାର ପତାକା (ବାନର୍)ଗୁଡିକ ହିଁ ବେଶୀ ଆଦର ପାଇଲା । ସିଂହମନା ରାଜା ରିଚାର୍ଡଙ୍କ ପତାକା ଓ ଫ୍ରାନ୍ସର ମୂଳ ପତାକା ଆଦି ଏହି ତୃତୀୟ ଶ୍ରେଣୀର । ଜାପାନ୍‌ରେ ବୀର ସାମୁରାଇମାନଙ୍କର ପତାକା ବି ବିଶେଷ ଧରଣର ଥିଲା । ଏହାର ପାଶ୍ଚାତ୍ୟ ପତାକା ସହ ଅନେକ ମେଳ ରହିଥିଲା । ସେମାନେ ଏଥିରେ କେତେକ ସଙ୍କେତ (ମନ୍) ରଖୁଥିଲେ । ଏମାନେ ବିବିଧ ରକମର ପତାକା ବ୍ୟବହାର କରୁଥିଲେ ।

## ସମୁଦ୍ରରେ ପ୍ରଥମ ପତାକା

ମଧ୍ୟଯୁଗ ବେଳକୁ ୟୁରୋପର ସୈନ୍ୟମାନେ ପୃଥିବୀର ବିଭିନ୍ନ ଦିଗକୁ ଜୟଯାତ୍ରା ଚଳାଇ ଥିଲେ । ସେମାନଙ୍କୁ ବଡ ବଡ ଜାହାଜରେ ବସି ସମୁଦ୍ର ପାରି ଦେଶସବୁକୁ ଯୁଦ୍ଧଯାତ୍ରା କରିବାକୁ ପଡୁଥିଲା । ସମୁଦ୍ରରେ ଜାହାଜରେ ଗଲାବେଳେ ନିଜ ଦେଶର ପରିଚୟ ଦେବାପାଇଁ ଜାହାଜ ଉପରେ ପତାକାରେ ସେମାନେ ବିଭିନ୍ନ ପ୍ରତୀକ ରଖୁଥିଲେ । ଏହାକୁ ଦେଖି ଦୂର ଜାହାଜ ସେମାନଙ୍କୁ ଜାଣି ପାରୁଥିଲେ । ଜାହାଜର ସବା ଉପରେ ଏଥିପାଇଁ ବିଶାଳକାୟ ପତାକାମାନ ବନ୍ଧା ଯାଉଥିଲା । ଏଥିରେ ସେମାନଙ୍କ ଶାସକ, ଯୋଦ୍ଧା ଆଦିଙ୍କ ପ୍ରତୀକ ରହୁଥିଲା । ବଣିକ ଜାହାଜଗୁଡିକ ନିଜ ବନ୍ଦର ବା ମାଲିକଙ୍କ ଅନୁସାରେ ଏକ ନିର୍ଦ୍ଦିଷ୍ଟ ରଙ୍ଗର ପତାକାକୁ ଜାହାଜ ଉପରେ ବାନ୍ଧୁଥିଲେ ।



(ପ୍ରାଚୀନ ବାଣିଜ୍ୟ ଜାହାଜ)



(ଜଳଦସ୍ୟୁଙ୍କ ପତାକା)

# ୧୪ଶ ଓ ୧୫ଶ ଶତାବ୍ଦୀର ପତାକା

ଆଗରୁ ଆମେ ଆଲୋଚନା କରିଛେ, କିପରି ଉଚ୍ଚବଂଶୀୟ ରାଜାରାଜୁଡ଼ାମାନେ ପତାକାଗୁଡ଼ିକର ବିଭିନ୍ନ ଦିଗ ଉପରେ ବେଶ୍ ପ୍ରଭାବ ପକାଇଥିଲେ । ୧୪ଶ ଶତାବ୍ଦୀ ବେଳକୁ ସେମାନଙ୍କ ପରପିଢ଼ି ବି ଏହି ପ୍ରଭାବକୁ ଜାରି ରଖିଥିଲେ । ସେମାନେ ଏଗୁଡ଼ିକୁ ଆହୁରି ଆକର୍ଷଣୀୟ କରିବା ପାଇଁ ଉଦ୍ୟମ କଲେ । ଏମାନଙ୍କ ସମୟର ପତାକାସବୁ ଅଧିକ ଆଡମ୍ବରପୂର୍ଣ୍ଣ ଓ ଆଭିଜାତ୍ୟସୂଚକ ଥିଲା । ସେମାନେ ଚେଷ୍ଟା କରୁଥିଲେ ଯେପରି ଏଗୁଡ଼ିକ ଅନ୍ୟମାନଙ୍କ ପତାକା ଠାରୁ ଅଧିକ ଆଖିଦୃଶିଆ ଓ ପ୍ରଭାବଶାଳୀ ମନେହେବ । ନିଜର ମାଲିକାନାକୁ ଜାରି ରଖିବା ପାଇଁ ସେମାନେ ପତାକାରେ ମଧ ଉଦ୍ୟମ ଚଳାଇଥିଲେ ।



(ବାଉଚାମ୍ପିଅମ୍‌ର ପତାକା)



(ରୋମୀୟ ଶାସକଙ୍କ ଦୁଇମୁଣ୍ଡିଆ ଛଞ୍ଚାଣ ଚିହ୍ନ)

ସ୍ପେନ୍, ଇଂଲଣ୍ଡ, ଫ୍ରାନ୍ସ୍ ଆଦି ବିକାଶଶୀଳ ଦେଶଗୁଡ଼ିକରେ ଏହି ରୀତି ଜୋର୍‌ସୋର୍ ଚାଲିଥିଲା । ଇଂଲଣ୍ଡର ତତ୍କାଳୀନ ଶାସକ ଏଡଓ୍ୱାର୍ଡ୍ ତୃତୀୟ ଏହା ମାଧ୍ୟମରେ ଆଉ ଏକ ଉଦ୍ୟମ ଚଳାଇଥିଲେ । ସେ ଚାହୁଁଥିଲେ ଇଂଲଣ୍ଡ ଓ ଫ୍ରାନ୍ସ ଜଣେ ଶାସକଙ୍କ ଅଧୀନରେ ଏକତ୍ର ରହନ୍ତୁ । ୧୫ଶ ଶତାବ୍ଦୀ ଯାଏଁ ଏଦିଗରେ ଏକ ବଡ ପ୍ରତିବନ୍ଧକ ଥିଲେ ଜୋଆନ୍ ଅଫ୍ ଆର୍କ୍, ଯାହାଙ୍କ ପତାକାରେ ଥିବା ଧଳା ରଙ୍ଗ ତାଙ୍କ ଦେଶକୁ ଏକ ସ୍ୱତନ୍ତ୍ର ଗୁରୁତ୍ୱ ଦେଇଥିଲା । ଏହି ପତାକା ଏ ଦିଗରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିଭାଇଥିଲା ।



(ଜୋଆନ୍ ଅଫ୍ ଆର୍କ ପତାକା)

ସେହିପରି ଏ ସମୟରେ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ପତାକା ଥିଲା ୟୁରୋପର ରାଜବଂଶର ପତାକା । ଏହାର ହଳଦିଆ ରଙ୍ଗର ପତାକା ଉପରେ ଗୋଟିଏ ଆକର୍ଷଣୀୟ ପ୍ରତୀକ ରହିଥିଲା । ଏହା ଥିଲା ଏକ ଦୁଇମୁଣ୍ଡିଆ ଛଞ୍ଚାଣ । ଏହି ପ୍ରତୀକଟି ପରେ ଜର୍ମାନୀ ଓ ଅଷ୍ଟ୍ରିଆର ପତାକରେ ବି ସ୍ଥାନ ପାଇଥିଲା ।

## ୧୬ଶ ଶତାବ୍ଦୀର ପତାକା

୧୬ ଶତାବ୍ଦୀବେଳକୁ ପୃଥିବୀରେ ଅନେକ ନୂଆ ନୂଆ ଆବିଷ୍କାର ଦେଖିବାକୁ ମିଳିଥିଲା । ୧୪୯୨ ମସିହାବେଳକୁ ନାବିକ କଲମ୍ବସ୍ ଏ ଦିଗରେ ଏକ ଐତିହାସିକ ଯାତ୍ରା ଆରମ୍ଭ କଲେ । ସେ ପ୍ରଥମେ ବାହାମାସ୍‌ର ଏଲ୍ ସାଲ୍‌ଭାଡର ଦ୍ୱୀପରେ ପାଦ ପକାଇଲେ । ସେଠାରେ ସେ ସ୍ପେନ୍‌ର ରାଜା ଫର୍ଡିନାଣ୍ଡ ଓ ରାଣୀ ଇସାବେଲାଙ୍କର ରାଜ ପତାକାକୁ ଉଡାଇଲେ । ପୂରା ମହାଦେଶଟିକୁ ଅକ୍ତିଆର କରିବା ଦିଗରେ ଏହା ପ୍ରଥମ ପାଦ ଥିଲା । ସେବେଠାରୁ ପଚାଶ ବର୍ଷ ମଧ୍ୟରେ ସମଗ୍ର ଭୂଖଣ୍ଡଟିରେ ସେମାନଙ୍କର ରାଜତ୍ୱ ଚାଲୁରହିଲା ।

ଏହି ଶତାବ୍ଦୀରେ ୟୁରୋପରେ ମଧ୍ୟ ଅନେକ ଆଲୋଡନ ସୃଷ୍ଟି ହୋଇଥିଲା । ଦୁଇଟି ମୁଖ୍ୟ ଘଟଣା ହିଁ ଏହାର କାରଣ ଥିଲା । ଗୋଟିଏ ଥିଲା-ତୁର୍କୀ ମୁସଲମାନମାନଙ୍କ ସହ ସଂଘର୍ଷ । ଆରଟି ଥିଲା - ଖ୍ରୀଷ୍ଟଧର୍ମର ଦୁଇ ଅଂଶ ସଂସ୍କାରବାଦୀ ପ୍ରୋଟେଷ୍ଟାଣ୍ଟ ଓ ସଂସ୍କାରବାଦୀ ବିପକ୍ଷ କ୍ୟାଥୋଲିକ୍ ଦଳ ମଧ୍ୟରେ ନୀତିଗତ ବିବାଦ । ଏହି ଦୁଇ ଝଗଡାକୁ ଭିତ୍ତି କରି ୟୁରୋପର ପତାକାଗୁଡିକରେ ବ୍ୟାପକ ପରିବର୍ତ୍ତନ ଆସିଗଲା । ଏହି ପ୍ରକ୍ରିୟାରେ ଉଦ୍‌ଭବ ହୋଇଥିଲା ପବିତ୍ର ରୋମ୍ ଶାସକ ଚାର୍ଲ୍‌ସ ପଞ୍ଚମଙ୍କ ପତାକା । ଏହି ଶତାବ୍ଦୀରେ ବିଭିନ୍ନ ରାଜବଂଶଙ୍କ ପାଇଁ ଅଲଗା ଅଲଗା ରଙ୍ଗ ଓ ପ୍ରତୀକ ଥିବା ପତାକା ସ୍ଥିର କରାଗଲା ।

## ୧୫୦୦ ମସିହାଠାରୁ ସମୁଦ୍ରରେ ପତାକା

୧୬ଶ ଶତାବ୍ଦୀ ବେଳକୁ ନୂଆ ନୂଆ ଦେଶ ଆବିଷ୍କାର କରିବା ପାଇଁ ନାବିକମାନେ ଦୂର ଦୂରାନ୍ତକୁ ବାହାରିଥିଲେ । ଏହି ଲମ୍ବା ଯାତ୍ରା ସମୟରେ ନିଜର ମାଲିକ ଓ ଦେଶର ପରିଚୟ ପାଇଁ ପତାକାଗୁଡିକ ମୁଖ୍ୟ ମାଧ୍ୟମ ଥିଲା । ପ୍ରଥମେ ପ୍ରଥମେ ଜାହାଜ ଓ ନାବିକଙ୍କର ସୁରକ୍ଷା ଓ ସମ୍ମାନ ପାଇଁ ଜାହାଜର ମାସ୍ତୁଲରେ ବିରାଟକାୟ ଓ ଆକର୍ଷଣୀୟ ପତାକାମାନ ବନ୍ଧା ଯାଉଥିଲା । କେତେକ ନିର୍ଦ୍ଦିଷ୍ଟ ସମୟରେ ଜାହାଜର ଦୁଇ କଡରେ ବି ବଡ ବଡ ପତାକା ଲଗାଯାଉଥିଲା । କ୍ରମଶଃ ଏତେ ଅଳଙ୍କୃତ ପତାକାସବୁକୁ ଦୂରରୁ ଦେଖି ଠଉରାଇବା କଷ୍ଟକର ହୋଇ ପଡିଲା । ଏଥିରେ ସୁବିଧା ପାଇଁ ପତାକାଗୁଡିକୁ ଧୀରେ ଧୀରେ ଅଧିକରୁ ଅଧିକ ସରଳ କରାଗଲା । ୧୬ଶ ମସିହା ଠାରୁ ଇଂରାଜୀ ଜାହାଜଗୁଡିକର ପତାକା ପ୍ରତୀକ ଥିଲା ଧଳା ରଙ୍ଗ ଉପରେ ସେଣ୍ଟ ଜର୍ଜଙ୍କ 'କ୍ରସ୍' ଚିହ୍ନ ରହୁଥିଲା ।



(ଜାପାନର ଯୁଦ୍ଧ ଜାହାଜ)

ଫ୍ରାନ୍‌ସ୍‌ର ଜାହାଜରେ ବିବିଧ ରକମର ଡିଜାଇନ୍ ରହୁଥିଲା । କେଉଁଥିରେ ନୀଳ ପତାକା ଉପରେ ଧଳା ରଙ୍ଗ ରହୁଥିଲା ତ କେଉଁଠି ସୁନେଲି ରଙ୍ଗର କିଛି ଚିହ୍ନ ରହୁଥିଲା । ହଲାଣ୍ଡ୍‌ର ଜାହାଜ ପତାକାରେ କମଳା, ଧଳା ଓ ନୀଳ ରଙ୍ଗର ପଟା ପଟା ଦାଗ ଦେଖିବାକୁ ମିଳୁଥିଲା ।

# ଜାତୀୟ ପତାକାର ଆରମ୍ଭ

ଆଜି ଆମେ ଦେଶବିଦେଶରେ କେତେଉକମର ପତାକା ଦେଖୁଛେ । ଏସବୁ ଆଜି ରୂପରେ ପହଞ୍ଚିବା ପାଇଁ ଲମ୍ବା ସମୟ ଲାଗିଛି । ଭାରତ, ଅଷ୍ଟ୍ରିଆ, ଡେନ୍‌ମାର୍କ ବା ତୁର୍କୀ ପରି ଦେଶର ପତାକା ପଛରେ ଅନେକ ଲୋମହର୍ଷଣକାରୀ ଘଟଣା ଘଟିଛି । କିନ୍ତୁ ପୋଲାଣ୍ଡ, ସ୍ୱଇଜରଲାଣ୍ଡ ଆଦି ଦେଶର ପତାକା ତିଆରିରେ ମଧ୍ୟଯୁଗୀୟ ରାଜବଂଶଙ୍କ ହାତ ରହିଛି । ୧୭ଶ ଶତାବ୍ଦୀ ବେଳକୁ ଅନେକ ବିପ୍ଲବାତ୍ମକ ସଂଘର୍ଷରୁ ଅନେକ ଦେଶର ଜାତୀୟ ପତାକା ତିଆରି ହୋଇଥିଲା । ଏହାର ଗୋଟିଏ ଉଦାହରଣ ହେଉଛି ହଲାଣ୍ଡ ଦେଶର ଜାତୀୟ ପତାକା । ଆଗରୁ ସ୍ପେନ୍‌ର ଯୋଦ୍ଧାମାନେ ହଲାଣ୍ଡକୁ ନିଜ କବଳରେ ରଖିଥିଲେ । ଏମାନଙ୍କ ଶାସନରୁ ମୁକୁଳିବା ପାଇଁ ହଲାଣ୍ଡବାସୀ ଦୀର୍ଘ ୮୦ ବର୍ଷ ଧରି ବିଦ୍ରୋହ କଲେ । ହଲାଣ୍ଡର ଏହି ଯୁଦ୍ଧର ଡାକରା ଥିଲା 'ଅରେଞ୍ଜ ହିଁ ଉପରେ ରହିବ' । ଏହାର ଏକ ଗଭୀର ଅର୍ଥ ଥିଲା । ଗୋଟିଏ ପଟେ ତାଙ୍କ ନେତା ଉଇଲିଅମ୍ (ପ୍ରଥମ) ଅରେଞ୍ଜର ଶାସକ ଥିଲେ । ଦ୍ୱିତୀୟରେ, ତାଙ୍କ ଦେଶର ପତାକାରେ ଭାରତୀୟ ପତାକା ପରି ତିନୋଟି ସମାନ୍ତର ରଙ୍ଗପଟି ଥିଲା । ଏହାର ଉପରି ରଙ୍ଗ ନାରଙ୍ଗୀ (ଅରେଞ୍ଜ), ତଳ ରଙ୍ଗଟି ଗାଢ଼, ନୀଳ ଓ ମଝିଟି ଧଳା ଥିଲା । ଏହା ମଝିରେ କୌଣସି ଚିହ୍ନ ନଥିଲା । ଏହାକୁ ଆଖି ଆଗରେ ରଖି ହଲାଣ୍ଡବାସୀ ପ୍ରାଣମୂର୍ଚ୍ଛା ସଂଗ୍ରାମ କଲେ ଓ ଶେଷରେ ଯୁଦ୍ଧରେ ବିଜୟୀ ହେଲେ । ସ୍ୱାଧୀନତା ପରେ ଅବଶ୍ୟ ତାଙ୍କ ପତାକାର ରଙ୍ଗ କିଛିତ ବଦଳିଗଲା । ଏହାର ଉପର ଭାଗରେ ଥିବା ନାରଙ୍ଗୀ ରଙ୍ଗ ବଦଳରେ ସେମାନେ ଲାଲ୍ ରଙ୍ଗକୁ ପସନ୍ଦ କଲେ । ସେବେଠାରୁ ହଲାଣ୍ଡର ଜାତୀୟ ପତାକା ଏହି ରୂପରେ ଚଳି ଆସୁଛି ।



(ହଲାଣ୍ଡର ବିଦ୍ରୋହ ପତାକା)

ଯୁକ୍ତରାଜ୍ୟର ପତାକାକୁ 'ୟୁନିଅନ୍ ଜାକ୍' ବୋଲି କୁହାଯାଇଥାଏ । ଏହାର ତିଆରି ବେଶ୍ ଶାନ୍ତିପୂର୍ଣ ଉପାୟରେ ହୋଇ ପାରିଥିଲା । ୧୬୦୩ ମସିହାବେଳକୁ ଏହି ପତାକା ତିଆରି ପ୍ରକ୍ରିୟାଟି ଆରମ୍ଭ ହୋଇଥିଲା । ସେତେବେଳେ ଇଂଲଣ୍ଡ ଓ ସ୍କଟଲାଣ୍ଡ ଉଭୟ ଦେଶ ଜଣେ ଶାସକଙ୍କ ଅଧୀନରେ ଥିଲା । ସେ ଥିଲେ ରାଜା ଜେମ୍‌ସ୍ ପ୍ରଥମ । ତିନି ବର୍ଷ ଶାସନ କଲାପରେ ସେ ହୁକୁମ ଦେଲେ ଯେ, ନୂଆ ଯୁକ୍ତରାଜ୍ୟର ଏକ ସ୍ୱତନ୍ତ୍ର ପତାକା ବନାଯିବ । ଏଥିରେ ଇଂଲଣ୍ଡର ସେଣ୍ଟ୍ ଜର୍ଜଙ୍କ ଲାଲ୍ 'କ୍ରଶ୍' ଚିହ୍ନ ଓ ସ୍କଟଲାଣ୍ଡର ସେଣ୍ଟ୍ ଆଣ୍ଡ୍ରିଉଙ୍କ ଧଳା 'କ୍ରଶ୍' ଚିହ୍ନକୁ ମିଶାଇ ରଖାଯିବ । ଏହି ଆଦେଶ ଅନୁସାରେ ଏହି ଦୁଇ ରଙ୍ଗର କ୍ରଶ୍



(ୟୁନିଅନ୍ ଜାକ୍)

**ୟୁନିଅନ୍ ଜାକ୍‌ର ଇତିହାସ**



ଇଂଲଣ୍ଡ (ସେଣ୍ଟ୍ ଜର୍ଜ)



ସ୍କଟ୍‌ଲାଣ୍ଡ (ସେଣ୍ଟ୍ ଆଣ୍ଡ୍ରିଉ)



*ପ୍ରଥମ ୟୁନିଅନ୍ ଜାକ୍ (୧୬୦୬)*



*ଆୟାର୍‌ଲାଣ୍ଡ (ସେଣ୍ଟ ପାଟ୍ରିକ୍)*



*ଆଜିର ୟୁନିଅନ୍ ଜାକ୍*

ଚିହ୍ନକୁ ବିଭିନ୍ନ ପ୍ରକାରେ ମିଶାଇ ଏକ ନୂଆ ପତାକାର ରୂପ ଅଙ୍କାଗଲା । ଅନେକ ଉଦ୍ୟମ ପରେ ଶେଷରେ ଯୁକ୍ତରାଜ୍ୟର ପତାକାଟି ସ୍ୱୀକୃତି ପାଇଲା । ୧୮୦୧ ମସିହା ବେଳକୁ ଏଥିରେ ସେଣ୍ଟ୍ ପାଟ୍ରିକଙ୍କର 'କ୍ରଶ୍' ଚିହ୍ନଟିକୁ ବି ଯୋଡାଗଲା । ଯୁକ୍ତରାଜ୍ୟର ଆଜିର ଜାତୀୟ ପତାକାଟି ଏହି ମିଶ୍ରଣର ଫଳ ।

ଯୁକ୍ତରାଷ୍ଟ୍ର ଆମେରିକାର ଜାତୀୟ ପତାକାରେ ଅନେକଗୁଡିଏ 'ତାରା ଓ ପଟି' ଦେଖିବାକୁ ମିଳିଥାଏ । ୧୮ଶ ମସିହାରେ ହୋଇଥିବା ବିପ୍ଳବାତ୍ମକ ଯୁଦ୍ଧରୁ ଏହାର ଆରମ୍ଭ ହୋଇଥିଲା । ଏହି ଯୁଦ୍ଧ ୧୭୭୫ ମସିହାରୁ ୧୭୮୩ ମସିହା ଯାଏଁ ଚାଲିଥିଲା । ଏଥିରେ ନୂଆ ଇଂଲଣ୍ଡରେ ଥିବା ବ୍ରିଟେନ୍‌ର ୧୩ଟି କଲୋନୀ ରାଷ୍ଟ୍ର ମୂଳଦେଶ ଠାରୁ ଅଲଗା ହୋଇଗଲେ । କୌଣସି ଅସନ୍ତୋଷଜନକ ଗତିବିଧି ବିରୋଧରେ ପତାକା ତିଆରି କରିବାର ପରମ୍ପରା ଆଗରୁ ଆମେରିକାରେ ଆରମ୍ଭ ହୋଇଯାଇଥିଲା । ଏହି ଘଟଣାର ଶହେ ବର୍ଷ ଆଗରୁ ଏଠାରେ ଧର୍ମନିଷ୍ଠ ବାସିନ୍ଦାମାନେ ବ୍ରିଟେନ୍‌ର ପତାକାରେ ଥିବା ସେଣ୍ଟ ଜର୍ଜଙ୍କ 'କ୍ରଶ୍' ଚିହ୍ନକୁ ପ୍ରତିବାଦ କରିଥିଲେ ଓ ଏହା ବଦଳରେ ସେମାନେ ଗୋଟିଏ ସାଧା ଲାଲ୍ ରଙ୍ଗର ପତାକା ଉଡାଇଥିଲେ, ଯେଉଁଥିରେ ତାଙ୍କ ପ୍ରଦେଶର ଛବିକୁ ଧଳା ରଙ୍ଗରେ ଅଙ୍କା ଯାଇଥିଲା । ଏହାର କିଛି ଦଶକ ପରେ ସ୍ଥାନୀୟ ଗୁରୁତ୍ୱକୁ ସ୍ଥାନ ଦେଇ ଏକ ନୂଆ ପତାକା ତିଆରି କରାଗଲା ଯେଉଁଥିରେ ଲାଲ୍ ରଙ୍ଗର ପତାକାର ଉପର କୋଣରେ ଧଳା କ୍ଷେତ୍ର ମଧ୍ୟରେ ଶାଗୁଆ ରଙ୍ଗର ଏକ ପାଇନ୍ ଗଛ ସ୍ଥାନ ପାଇଲା ।

୧୭୬୦ ମସିହା ବେଳକୁ ବ୍ରିଟିଶ୍ ରାଜତ୍ୱ ବିରୁଦ୍ଧରେ ଆନ୍ଦୋଳନ ତେଜି ଉଠିଲା । ଏହା ବିରୁଦ୍ଧରେ ଆଘୋଷ (ସ୍ଲୋଗାନ୍) ଦିଆଯାଇ ନୂଆ ନୂଆ ପତାକାମାନ ଦେଖିବାକୁ ମିଳିଲା । ୧୭୭୫ରେ ବିଦ୍ରୋହ ଆରମ୍ଭ ହେଲା ପରେ ପରେ ଆମେରିକାବାସୀ ଏକ ନୂଆ ଅଣବେସରକାରୀ ପତାକାକୁ ବ୍ୟବହାର କଲେ । ଏହାର ନାମ ରହିଲା 'କଣ୍ଟିନେଣ୍ଟାଲ୍ କଲର୍‌ସ୍' । ଏହାକୁ ସେମାନେ ୧୭୭୭ ଯାଏଁ ବ୍ୟବହାର କଲେ । ସେହି ବର୍ଷ ସେମାନେ ଏହାକୁ ବଦଳାଇ ତାରା ଓ ପଟି ଥିବା



(କଣ୍ଟିନେଣ୍ଟାଲ୍ କଲର୍ସ)

ପତାକାଟିକୁ ଉଡାଇବାକୁ ଆରମ୍ଭ କଲେ । ଏଥିରେ ଥିବା ୧୩ଟି ତାରା ଏହାର ଆଗର ୧୩ଟି କଲୋନୀକୁ ସୂଚାଉଥିଲା । ସେବେଠାରୁ ରାଜ୍ୟଗୁଡିକର ସଂଖ୍ୟା ବଢିଚାଲିଛି । ଆଜି ରାଜ୍ୟର ସଂଖ୍ୟା ଅନୁସାରେ ଆମେରିକାର ପତାକାରେ ୫୦ଗୋଟି ତାରା ଛବି ରହିଛି ।

ଫ୍ରାନ୍ସର ଜାତୀୟ ପତାକା ତିଆରି ପଛରେ ବି ଏପରି ଆଉ ଏକ ଜାତୀୟ ବିଦ୍ରୋହର ଭୂମିକା ରହିଛି । ଏଠାରେ ୧୭୮୯ ମସିହା ଜୁଲାଇ ମାସ ୧୪ ତାରିଖରେ ଏକ ବଡ ଘଟଣା ଘଟିଥିଲା । ବାଷ୍ଟିଲ୍ ଠାରେ ଥିବା ବନ୍ଦୀ ଦୁର୍ଗଟି ବିଦ୍ରୋହୀଙ୍କ ଆକ୍ରମଣରେ ନାଟକୀୟ ଭାବେ ଭୁଷୁଡି ପଡିଲା । ବନ୍ଦୀମାନେ ଏଥିରୁ ମୁକୁଳି ଗଲେ । ଏହାପରେ ଫ୍ରାନ୍ସର ତତ୍କାଳୀନ ଶାସକ ନିଜ ଗାଦି ହରାଇଲେ । ବିଦ୍ରୋହୀମାନଙ୍କ ପତାକାରେ ଫ୍ରାନ୍ସର ଚିରାଚରିତ ଧଳା ରଙ୍ଗ ଓ ପ୍ୟାରିସ୍‌ର ନୀଳ ଓ ଲାଲ୍ ରଙ୍ଗ ରହିଲା ।



*( ଯୁକ୍ତରାଷ୍ଟ୍ର ଆମେରିକାରପତାକା )*



*( ଫ୍ରାନସ୍‌ର ପତାକା )*

ଏହାର କ୍ରମ ବିବର୍ତ୍ତନ ୧୭୯୪ ମସିହା ଯାଏଁ ଚାଲୁରହିଲା । ସେହି ବର୍ଷ ଆଜିର ଫ୍ରାନ୍ସର ଜାତୀୟ ପତାକା ଶୋଭା ପାଇଲା । ଏହି ତ୍ରିରଙ୍ଗା ପତାକାଟି ଚାରି କୋଣିଆ ନୁହେଁ । ଏହାର ବାହାର ମୁଣ୍ଡଟି ଦୁଇ ଫାଳିଆ । ଏହାର ଉପର ରଙ୍ଗ ନୀଳ, ତଳ ରଙ୍ଗ ଲାଲ୍ ଓ ମଝି ରଙ୍ଗଟି ଧଳା ।

## ୧୯ଶ ଶତାବ୍ଦୀର ପତାକା

୧୯ଶ ଓ ୨୦ଶ ଶତାବ୍ଦୀର ଆନ୍ତର୍ଜାତିକ ଦୃଶ୍ୟପଟରେ ଅନେକ ନାଟକୀୟ ପରିବର୍ତ୍ତନ ଦେଖିବାକୁ ମିଳିଛି । ବାରମ୍ବାର ରାଜନୈତିକ ପରିବର୍ତ୍ତନ ସାଙ୍ଗକୁ ସାମାଜିକ ସଂସ୍କାର ଫଳରେ ପୃଥିବୀରେ ଅନେକ ନୂଆ ନୂଆ ଦେଶ ଗଢିଉଠିଛି ଓ ଅନେକ ନୂଆ ପତାକା ମୁଣ୍ଡ ଟେକିଛି । ସ୍ପେନ୍ ଓ ପର୍ତ୍ତୁଗାଲର ଶାସକମାନଙ୍କ ସାମ୍ରାଜ୍ୟବାଦ ବିରୁଦ୍ଧରେ ହୋଇଥିବା ଆନ୍ଦୋଳନ ଏହାର ଏକ ଉଦାହରଣ । ଏହା ଫଳରେ ଯେଉଁ ପତାକା ସବୁ ନୂଆରେ ତିଆରି ହୋଇଥିଲା, ସେସବୁ ଆଜି ମଧ୍ୟ ଓ କେନ୍ଦ୍ରୀୟ ଆମେରିକାରେ ଥିବା ସ୍ୱାଧୀନ ଦେଶଗୁଡିକର ଜାତୀୟ ପତାକା ରୂପେ ବ୍ୟବହୃତ ହେଉଛି । ୧୯ଶ ଶତାବ୍ଦୀରେ ଜାତୀୟ ସ୍ତରରେ ମେଣ୍ଟ ପାଇଁ ଜର୍ମାନୀ ଓ ଇଟାଲୀରେ



( ଜର୍ମାନୀର ପତାକା )



( ଇଟାଲୀର ପତାକା)

ଯେଉଁ ଲଢେଇ ଚାଲିଥିଲା, ସେହି ପ୍ରକ୍ରିୟାରେ ତାଙ୍କର ଜାତୀୟ ପତାକାଗୁଡିକର ରୂପ ସ୍ଥିର ହୋଇଥିଲା । ଆଜି ସେଗୁଡିକ ହିଁ ଏହି ଦେଶଗୁଡିକର ଜାତୀୟ ପତାକା ରୂପେ କାମରେ ଲାଗୁଛି । ୧୮୩୨ ମସିହାରେ ଜର୍ମାନୀରେ ଛାତ୍ରମାନେ ଦେଶର ଏକତା ପାଇଁ ଏକ ବଡ ଆନ୍ଦୋଳନ କରିଥିଲେ । ଏହି ପ୍ରକ୍ରିୟାରେ ତାଙ୍କର ଜାତୀୟ ପତାକାଟିକୁ ଅଙ୍କାଗଲା । ଏହା ଦୁଇ ଜର୍ମାନୀର ଏକତ୍ରୀକରଣକୁ ସୂଚାଉଛି ।

## ଆମ ଏସିଆ ମହାଦେଶର ପତାକା

ଏସିଆ ମହାଦେଶରେ ବିଭିନ୍ନ ରକମର ପତାକା ଦେଖିବାକୁ ମିଳେ । ପ୍ରତ୍ୟେକ ଦେଶର ଇତିହାସ, ରାଜନୈତିକ ସ୍ଥିତି ଓ ବିଭିନ୍ନ ସମୟରେ ହୋଇଥିବା ଗତିବିଧିକୁ ନେଇ ପତାକାଗୁଡିକର ରଙ୍ଗ, ରୂପ ସଜାଇ ହୋଇଛି । ଏଗୁଡିକ ମଧ୍ୟରୁ ଆମ ଦେଶର ତ୍ରିରଙ୍ଗା ପତାକା ସହ ଆମେ ସବୁଠୁ ବେଶୀ ପରିଚିତ । ଏ ବିଷୟରେ ଆଗକୁ ଆମେ ଆଲୋଚନା କରିବା । ଏଠାରେ ଅନ୍ୟ କେତୋଟି ଦେଶର ପତାକା ଉପରେ ଆଖି ପକାଇବା ।

*ତୁର୍କୀର ପତାକା* : ଏହା ଏକ ଲାଲ୍ ରଙ୍ଗର ଆୟତାକାର ପତାକା । ଏହାର ମଝିଆଡକୁ ଖଣ୍ଡିଆ ଜହ୍ନ ପାଖରେ ତାରାଟିଏ ଦେଖିବାକୁ ମିଳେ । ଏହାର ରଙ୍ଗ ଧଳା । ଏ ଦୁଇଟି ଛବି ଇସ୍ଲାମ୍ ଧର୍ମର ସଙ୍କେତ । କିନ୍ତୁ ମଜା କଥା ହେଉଛି ତୁର୍କୀ ଏକ ମୁସଲିମ୍ ଦେଶ ହେବାର ଅନେକ ଆଗରୁ ସେମାନେ ଏହି ପତାକାକୁ ନିଜ ଜାତୀୟ ପତାକା ରୂପେ ଗ୍ରହଣ କରି ନେଇଥିଲେ ।



ଗୋଟିଏ କାହାଣୀ ଅନୁସାରେ, ମାସିଡନ୍‌ର ରାଜା ଫିଲିପ୍ ଏକଦା ବାଇଜାଣ୍ଟିଅମ ନଗରୀ (ଏବେ ଇସ୍ତାନ୍‌ବୁଲ୍)କୁ ରାତାରାତି ଅକ୍ତିଆର କରିବାକୁ ଚେଷ୍ଟା କଲେ । ଏହା ଥିଲା ଖ୍ରୀ.ପୂ. ୩୩୯ ସମୟର ଘଟଣା କିନ୍ତୁ ଖଣ୍ଡିଆ ଜହ୍ନର ଉଜ୍ଜଳତା ସେ ସମୟରେ ଏତେ ବେଶୀ ଥିଲା ଯେ, ତାଙ୍କର ସୈନ୍ୟମାନେ ସହଜରେ ବାଇଜାଣ୍ଟିଅମ୍ ସୈନ୍ୟଙ୍କ ଆଖିରେ ଧରା ପଡିଗଲେ ଓ ନଗରୀଟି ଏକ ନିଶ୍ଚିତ ଭୟଙ୍କର ବିପତ୍ତିରୁ ରକ୍ଷା ପାଇଗଲା । ସେବେଠାରୁ ବାଇଜାଣ୍ଟିଅମ୍ (ପରେ ଏହା କନ୍‌ଷ୍ଟାଣ୍ଟିନୋପଲ୍ ହେଲା) ଏହି ଖଣ୍ଡିଆ ଜହ୍ନକୁ ନିଜ ଦେଶର ଏକ ଶୁଭ ପ୍ରତୀକ ରୂପେ ଗ୍ରହଣ କଲା ।

ଆଉ ଏକ ପୌରାଣିକ କାହାଣୀ କହେ, ଓଥମାନ୍ ନାମକ ଜଣେ ମୁସଲମାନ ସୁଲତାନ୍ ଥିଲେ । ସେ ୧୩ଶ ଶତାବ୍ଦୀରେ ତୁର୍କୀ ଆକ୍ରମଣ କରିଥିଲେ । ସେ ଥରେ ସ୍ୱପ୍ନରେ ଦେଖିଲେ, ପୃଥିବୀ ଉପର ଆକାଶରେ ଏକ ବିରାଟକାୟ ଖଣ୍ଡିଆ ଜହ୍ନ ଝଲସୁଛି । ଏହାକୁ ଦେଖି ସୁଲତାନ୍ ଉଲ୍ଲସିତ ହୋଇ ଉଠିଲେ । ସେ ଭାବିଲେ ଏହା ଏକ ଶୁଭସୂଚକ । ତେଣୁ ଏହାକୁ ସେ ନିଜର ପ୍ରତୀକ ରୂପେ ଗ୍ରହଣ କଲେ ।

ଏହାଛଡା ପତାକାରେ ଥିବା ତାରାଟିକୁ ବି ବିଭିନ୍ନ ଦିଗରୁ ବିଚାର କରାଯାଇଥାଏ । ଗୋଟିଏ ଦିଗରୁ ଏହା କୋରାନ୍‌ରେ ଦିଆଯାଇଥିବା ପାହାନ୍ତି ତାରା ବା ଖ୍ରୀଷ୍ଟଧର୍ମର ସଙ୍କେତକୁ ସୂଚାଉଥାଇପାରେ ।

*ଜୋର୍ଡାନ୍‌ର ପତାକା* : ୧୯୧୮ ମସିହା ଯାଏଁ ଜୋର୍ଡାନରେ ଗୋଟିଏ ରକମର ପତାକା ପ୍ରଚଳିତ ଥିଲା । ଏହାକୁ ଚଳାଇଥିଲେ ଜୋର୍ଡାନ୍‌ର ହଶେମାଇଟ୍ ରାଜବଂଶ । ୧୯୧୮ ମସିହାରେ ତୁର୍କୀ ସମ୍ରାଟଙ୍କ ବିରୁଦ୍ଧରେ ଆରବୀ ଯୋଦ୍ଧାମାନେ ଘମାଘୋଟ ଲଢେଇ କରିଥିଲେ । ସେ ସମୟରେ ଏହି ପତାକାକୁ ନୂଆରେ ବ୍ୟବହାର କରାଯାଇଥିଲା । ସେବେଠାରୁ ୧୯୨୧ ମସିହା ଯାଏଁ ଏହା ଚାଲିଥିଲା । ୧୯୨୧ ମସିହାରେ ଏବେକାର ପତାକାଟି ନୂଆରେ ତିଆରି କରାଗଲା । ଆଗ ଅପେକ୍ଷା ଏହାକୁ କିଛି ପରିମାଣରେ ବଦଳାଇ ଦିଆଗଲା । ଏହି ଆୟତାକାର ପତାକାଟିର ବନ୍ଧାଯିବା ପଟଟିରେ ଗୋଟିଏ ନାଲି ତ୍ରିଭୁଜ ଦେଖିବାକୁ ମିଳେ । ଏହାର ମଝିରେ ଏକ ସାତମୁଣ୍ଡିଆ ତାରା ରହିଅଛି । ଏହା କୋରାନ୍‌ରେ ଥିବା ପ୍ରଥମ ସାତଧାଡିକୁ ପ୍ରତିନିଧିତ୍ୱ କରିଥାଏ । ଏହି ସାତଟି ଧାଡି ମୁସଲମାନ୍ ବିଶ୍ୱାସର ମୂଳ ଆଧାର । ଏହି ତ୍ରିଭୂଜଟିର ବାହାର ଆଡକୁ ୩ଟି ସମାନ୍ତର ପଟି ରହିଥାଏ । ଏହାର ଉପରଟି କଳା, ମଝିଟି ଧଳା ଓ ତଳପଟିଟି ଶାଗୁଆ ରଙ୍ଗର ହୋଇଥାଏ ।



*ପାକିସ୍ଥାନ୍‌ର ପତାକା* : ପାକିସ୍ଥାନର ପତାକାଟିର ବନ୍ଧାଯିବା ପଟଟିରେ ଏକ ଧଳା ଆୟତାକାର କ୍ଷେତ୍ର ରହିଥାଏ । ବଳକା ଅଂଶରେ ସବୁଜ ରଙ୍ଗ ରହିଥାଏ । ଏହାର ମଝି ଭାଗରେ ଖଣ୍ଡିଆ ଜହ୍ନ ଓ ତାରା ଚିହ୍ନ ଧଳା ରଙ୍ଗରେ ଦେଖିବାକୁ ମିଳେ । ପତାକାଟିରୁ ସ୍ପଷ୍ଟ ଭାବେ ଜାଣି ହୋଇଯାଏ , ଏହା ଏକ ମୁସ୍‌ଲିମ୍ ରାଷ୍ଟ୍ର । ସବୁଜ ରଙ୍ଗ, ଖଣ୍ଡିଆ ଜହ୍ନ ଓ ତାରା ଆଦି ଇସ୍‌ଲାମ୍ ଧର୍ମର ପ୍ରତୀକ । ଏହାର ବାମପଟେ ଥିବା ଧଳା ରଙ୍ଗଟି ପାକିସ୍ଥାନରେ ବାସ କରୁଥିବା ହିନ୍ଦୁ,



ବୌଦ୍ଧଧର୍ମୀ ଓ ଖ୍ରୀଷ୍ଟିଆନ୍‌ଙ୍କର ପ୍ରତିନିଧିତ୍ୱ କରୁଛି । ଏଠାକାର ପୁରାତନ ମୁସଲିମ୍ ଲିଗ ଦ୍ୱାରା ୧୯୦୬ ମସିହାରେ ଏହି ପତାକାଟି ତା'ର ରୂପ ପାଇଥିଲା । ୧୯୪୭ ମସିହାରେ ଦେଶ ସ୍ୱାଧୀନ ହେବା ପରେ ଏହାକୁ ଜାତୀୟ ପତାକା ରୂପେ ଗ୍ରହଣ କରାଗଲା ।

*ଶ୍ରୀଲଙ୍କାର ପତାକା* : ଶ୍ରୀଲଙ୍କାର ପତାକା ଅନ୍ୟ ଦେଶର ପତାକା ଠାରୁ କିଞ୍ଚିତ ଅଲଗା ଲାଗେ । ଏଥିରେ ଦୁଇଟି ଅଲଗା ଅଂଶ ଥିଲା ପରି ମନେହୁଏ । ସୁନେଲି ରଙ୍ଗର ଧାର ମଧ୍ୟରେ ଏହି ଦୁଇଟି ଅଂଶ ଦେଖାଯାଏ । ଭିତରପଟଟି ସରୁଆ ଓ ବାହାରପଟଟି ଆୟତାକାର ଓସାରିଆ ଜଣାପଡେ । ସରୁଆ ଅଂଶରେ ଦୁଇଟି ଲମ୍ବାପଟି ଦେଖାଯାଏ । ଏହା ଦେଶଟିର ଦୁଇ ସଂଖ୍ୟାଗରିଷ୍ଠ ଧର୍ମାବଲମ୍ବୀଙ୍କୁ ସୂଚାଏ । ସବୁଜଟି ମୁସଲିମ୍ ଧର୍ମର ପ୍ରତୀକ ଓ ନାରଙ୍ଗୀ ହିନ୍ଦୁ ଧର୍ମର ପ୍ରତୀକ । ବାହର ପଟର ବଡ ଭାଗଟିରେ କାଣ୍ଡି ପ୍ରଦେଶର ପୂର୍ବତନ ରାଜବଂଶର ରାଜକୀୟ ପତାକାଟି ରହିଛି । ୧୮୧୫ ମସିହାରେ ଇଂରେଜ ଲୋକମାନେ ଶ୍ରୀଲଙ୍କାକୁ ଅକ୍ତିଆର କରିବା ପୂର୍ବରୁ କାଣ୍ଡି ଶ୍ରୀଲଙ୍କା ଦ୍ୱୀପର କେନ୍ଦ୍ର ଭାଗରେ ଥିଲା । ଆଧୁନିକ ପତାକାଟିକୁ ୧୯୫୧ ମସିହାରେ ଜାତୀୟ ପତାକା ରୂପେ ଗ୍ରହଣ କରାଯାଇଥିଲା । ଏହାର ତିନି ବର୍ଷ ଆଗରୁ ଶ୍ରୀଲଙ୍କା ବ୍ରିଟିଶ୍ ରାଜତ୍ୱରୁ ମୁକୁଳି ଥିଲା ।



*ଭୂଟାନ୍‌ର ପତାକା* : ହିମାଳୟ ପର୍ବତଶ୍ରେଣୀର ପାଦ ଦେଶରେ ଅବସ୍ଥିତ ଏହି ଛୋଟ ଦେଶଟିର ପତାକା ଏକ ବିଶେଷ ଧରଣର ମନେ ହୁଏ । ସ୍ଥାନୀୟ ତୀବ୍ବତୀୟ ଭାଷାରେ ଭୂଟାନ୍ ଶବ୍ଦର ଅର୍ଥ, 'ରାକ୍ଷସର ଦେଶ' । ଏହା ଅନୁସାରେ ଏଠାକାର ଜାତୀୟ ପତାକାରେ କଳାଧଳା ରଙ୍ଗରେ ଡେଣା ନଥିବା ଗୋଟିଏ ଭୟଙ୍କର ଡ୍ରାଗନ୍ (ରାକ୍ଷସ)ର ଛବି ଦେଖିବାକୁ ମିଳେ । ଡ୍ରାଗନ୍ ଶବ୍ଦର ଆଉ ଏକ ମାନେ ହେଉଛି, 'ଡ୍ରୁକ୍' ବା ଘଡଘଡି । ଏଠାରେ ଏକ ପ୍ରାଚୀନ ବିଶ୍ୱାସ ରହି ଆସିଛି ଯେ, ହିମାଳୟର ଶୃଙ୍ଗଗୁଡିକରେ ଥିବା ଡ୍ରାଗନ୍‌ମାନେ (କାଳ୍ପନିକ) ଗର୍ଜନ କଲେ ଏହା ତାଙ୍କର ଏହି ପାହାଡିଆ ଦେଶଟିରେ ଘଡଘଡି ରୂପେ ଶୁଣାଯାଇଥାଏ । ପତାକାଟିରେ ଥିବା ଏହି ଡ୍ରାଗନ୍ ଆଉ ଏକ ସୂଚନା ବି ଦେଇଥାଏ । ଏହାର ପଡୋଶୀ ଚୀନ୍ ଦେଶ ସହ ଭୂଟାନର ଏକ ନିବିଡ ରାଜନୈତିକ ସମ୍ପର୍କ ରହି ଆସିଛି । ଚୀନ୍ ଦେଶ ହଳଦିଆ ରଙ୍ଗର ପତାକା ଉପରେ ଏକ ବିରାଟ ଡ୍ରାଗନ୍‌ର ଛବି ଦେଖବାକୁ ମିଳିଥାଏ । ଏହି ସମ୍ପର୍କକୁ ଭିତ୍ତି କରି



ଭୂଟାନର ପତାକାରେ ବି ହଳଦିଆ ରଙ୍ଗଟି ରହିଥାଇପାରେ । ପତାକାଟିର ତଳ ଭାଗରେ କୋଣିଆ କରି ରହିଥିବା ନାରଙ୍ଗୀ-ଲାଲ୍ ରଙ୍ଗଟି ବୌଦ୍ଧଧର୍ମର ପ୍ରତୀକ । ଏହା ୧୯୬୦ ମସିହାରେ ପ୍ରଥମ କରି ଏଥିରେ ସ୍ଥାନ ପାଇଥିଲା ।

*ଥାଇଲାଣ୍ଡର ପତାକା* : ଥାଇଲାଣ୍ଡର ପତାକାରେ ଅନେକଗୁଡ଼ିଏ ସମାନ୍ତରାଳ ପଟି ଦେଖିବାକୁ ମିଳିଥାଏ । ଏଥିରେ ମୁଖ୍ୟତଃ ତିନୋଟି ରଙ୍ଗ ରହିଥିବାରୁ ଏହାକୁ ତ୍ରିରଙ୍ଗା ପତାକା କୁହାଯାଇଥାଏ । ଏହି ପତାକାଟି ତାଙ୍କର ଜାତୀୟ, ପ୍ରାଦେଶିକ ଓ ବାଣିଜ୍ୟ ପତାକା ରୂପେ ବ୍ୟବହାର ହୋଇଥାଏ । ଏହାର ଦୁଇମୁଣ୍ଡରେ ଦୁଇଟି ନାଲିପଟି ଦେଖିବାକୁ ମିଳେ । ଏହା ପତାକାଟିର ଏକ-ତୃତୀୟାଂଶ ଜାଗା ଅଧିକାର କରେ । ଏହାର ଭିତର ପଟକୁ ସମାନ ଚଉଡାର ଦୁଇଟି ଧଳା ପଟି ରହିଥାଏ । ଏହା ବି ପତାକାଟିର ଏକ-ତୃତୀୟାଂଶ ସ୍ଥାନ ନିଏ । ମଝିରେ ଥିବା ବଳକା ଜାଗାଟିକୁ ନୀଳ ରଙ୍ଗରେ ଗୋଟିଏ ପଟି ରୂପେ ଦେଖିବାକୁ ମିଳେ ।

ପ୍ରାଚୀନ କାଳରୁ ଥାଇଲାଣ୍ଡକୁ 'ଶ୍ୱେତ ହସ୍ତୀର ଦେଶ' ବୋଲି କୁହାଯାଉଛି । ପୁରାଣ କହେ ଯେ, 'ଜାକ୍ଷା' ଏହି ଦେଶଟିକୁ ପ୍ରତିଷ୍ଠା କରିଥିଲେ । ସେ ଅନେକ ରୂପ ଦେଇ ଗଲାପରେ ଶେଷରେ ସେ ଏକ ଧଳାହାତୀ ହୋଇଥିଲେ । ଏବେ ବି ଥାଇଲାଣ୍ଡର ସାମୁଦ୍ରିକ ବାହିନୀର ପତାକାରେ ଗୋଟିଏ ଧଳା ହାତୀର ଛବି ଦେଖିବାକୁ ମିଳେ । ୧୯୧୬ ମସିହା ଆଗରୁ ଥାଇଲାଣ୍ଡର ନାଲିଆ ଜାତୀୟ ପତାକା ଉପରେ ଏପରି ଏକ ହାତୀର ଛବି ରହିଥିଲା । ସେହି ବର୍ଷ ସେଠାରେ ରାଜା ଲକ୍ଷ୍ୟ କଲେ, ଗୋଟିଏ ଗାଁରେ ଏହି ପତାକାଟିକୁ ଓଲଟାକ୍ରମରେ ଉଡାଯାଉଛି । ପବିତ୍ର ହାତୀଟିର ଗୋଡଗୁଡିକ ସିଧା ଉପର ପଟକୁ ମୁହାଁଇବା ଅତି ଅପମାନଜନକ ଥିଲା । ସେବେଠାରୁ ପତାକାଟିକୁ ବଦଳାଇ ଦିଆଗଲା, ଯେପରି ଏହାକୁ ଓଲଟାଇ ଦେଲେ ବି ଏହାର ଅର୍ଥ ବା ରୂପରେ କିଛି ଫରକ ରହିବ ନାହିଁ । ଅଳ୍ପ କିଛି ବର୍ଷ ପାଇଁ ପତାକାଟିରେ କେବଳ ଲାଲ୍ ଓ ଧଳା ରଙ୍ଗର ପଟି ରହିଥିଲା । କିନ୍ତୁ ୧୯୧୭ ମସିହା ବେଳଠାରୁ ଏହାକୁ ବଦଳାଇ ଆଜିର ରୂପ ଦିଆଗଲା । ସେବେଠାରୁ ଏହା ଏହି ରୂପରେ ଚଳିଆସୁଛି ।

*ଫିଲିପାଇନ୍‌ସର ପତାକା* : ଫିଲିପାଇନ୍‌ସ୍ ସାଧାରଣତନ୍ତ୍ରର ଜାତୀୟ ପତାକାରେ ଭିତର ପାଖରେ ଗୋଟିଏ ଧଳା ସମବାହୁ ତ୍ରିଭୁଜ ରହିଥାଏ । ଏହା ମଝିରେ ଗୋଟିଏ ସୁନେଲି ସୂର୍ଯ୍ୟ ଓ ଏହାର ତିନି କୋଣରେ ତିନୋଟି ତାରା ରହିଥାଏ । ଏହି ସୂର୍ଯ୍ୟର ଆଠଟି କିରଣ ଫିଲିପାଇନ୍‌ସ୍‌ର ଆଠଟି ପ୍ରଦେଶକୁ ସୂଚାଇଥାଏ । ୧୮୯୮ ମସିହାରେ ଏହି ୮ଟି ପ୍ରଦେଶ ସ୍ପେନ୍‌ର ଶାସନ ବିରୁଦ୍ଧରେ ଲଢେଇ କରିଥିଲେ । ପତାକାର ସୂର୍ଯ୍ୟ ଚାରିପାଖରେ ତିନୋଟି ଛୋଟ ପାଞ୍ଚମୁଣ୍ଡିଆ ତାରା ଚିହ୍ନ ରହିଛି । ଏଗୁଡିକ ଫିଲିପାଇନ୍‌ସ୍‌ର ତିନୋଟି ମୁଖ୍ୟ ଦ୍ୱୀପର ପ୍ରତିନିଧିତ୍ୱ

କରନ୍ତି । ଏହି ତ୍ରିଭୂଜଟିର ବାହାର ପଟକୁ ଥିବା ଅଂଶକୁ ନୀଳ ଓ ଲାଲ୍ ରଙ୍ଗରେ ଏକା ଅନୁପାତରେ ରଙ୍ଗା ଯାଇଥାଏ । ଏହି ପତାକାଟି ଉଭୟ ଜାତୀୟ ପତାକା ଓ ବାଣିଜ୍ୟ ପତାକା ରୂପେ ବ୍ୟବହୃତ ହୋଇଥାଏ । ଏହାକୁ ଦେଶର ଜଳବାହିନୀର ପତାକା ରୂପେ ବି ବ୍ୟବହାର କରାଯାଏ । ଏହି ପତାକାଟିର ଆଉ ଏକ ବିଶେଷତ୍ୱ ବି ରହିଛି । ଯୁଦ୍ଧ ସମୟରେ ଏହାକୁ ଓଲଟା କରି ଉଡା ଯାଇଥାଏ । ଏହାର ଲାଲ୍ ରଙ୍ଗର ପଟିଟି ଉପର ପଟକୁ ରହିଲେ ଏହାର ଅର୍ଥ ବଦଳିଯାଏ । ଏହି ଲାଲ୍ ରଙ୍ଗ ସାହସ ଓ ତ୍ୟାଗର ପ୍ରତୀକ ।



ଫିଲିପାଇନ୍‌ସର ପତାକାକୁ ୧୮୯୮ ମସିହାରେ ପ୍ରଥମେ ଅଙ୍କା ଯାଇଥିଲା, ସେତେବେଳେ ଏଠାରେ ସ୍ପେନ୍‌ର ଲୋକେ ଶାସନ କରୁଥିଲେ । ହଂକଂକୁ ନିର୍ବାସିତ ହୋଇଥିବା ଫିଲିପାଇନ୍‌ସ୍‌ର ନେତାମାନେ ସେ ସମୟରେ ଏହି ପତାକାଟିର ରୂପ ଆଙ୍କିଥିଲେ । ସେବେଠାରୁ ଏହା ଦେଶଟିର ଜାତୀୟ ପତାକା ରୂପେ ବ୍ୟବହୃତ ହୋଇଆସୁଛି ।

*ଚୀନ୍‌ର ପତାକା* : ଚୀନ୍‌ର ପତାକାଟିର ମୂଳ ରଙ୍ଗ ଲାଲ୍ । ଏହା କମ୍ୟୁନିଜମ୍‌ର ପ୍ରତୀକ । ଏହା ଚୀନ ଦେଶର ପାରମ୍ପରିକ ରଙ୍ଗ । ତେଣୁ ଜାତୀୟ ପତାକାରେ ଏହା ସର୍ବାଧିକ ଗୁରୁତ୍ୱ ପାଇବା ଏକ ସ୍ୱାଭାବିକ କଥା । ଏହି ପତାକାର ଭିତର ପଟର ଉପର ଭାଗରେ ପାଞ୍ଚଟି ପାଞ୍ଚମୁଣ୍ଡିଆ ହଳଦିଆ ତାରା ଦେଖିବାକୁ ମିଳେ । ମଝିରେ ଥିବା ବଡ ତାରାଟି ଚୀନ୍‌ର କମ୍ୟୁନିଷ୍ଟ ଦଳର ଆଦର୍ଶ କାର୍ଯ୍ୟକ୍ରମକୁ ସୂଚାଉଛି । ଏହାର କଡକୁ ରହିଥିବା ଚାରି ସାନ ତାରାଙ୍କର ବି ଏକ ନିର୍ଦ୍ଦିଷ୍ଟ ଭୂମିକା ରହିଛି । ଏହା ଚୀନ୍‌ର ଚାରିଟି ମୁଖ୍ୟ ସାମାଜିକ ଶ୍ରେଣୀକୁ ସୂଚାଉଛି । ସେମାନେ ହେଲେ : ଶ୍ରମିକ, ଚାଷୀ, ମଧ୍ୟବିତ୍ତଲୋକ, ଓ 'ଦେଶପ୍ରେମୀ ପୁଞ୍ଜିପତି' । ଏମାନେ ସମସ୍ତେ ପାର୍ଟିର ନେତୃତ୍ୱ ଅଧୀନରେ ଏକତ୍ର କାମ କରିଥାନ୍ତି । ଏହି ପାଞ୍ଚଟି ତାରାଙ୍କର ଆଉ ଏକ ଅର୍ଥ ବି ରହିଛି । ସେମାନେ ଚୀନ୍‌ର ପାଞ୍ଚଟି ମୁଖ୍ୟ ପାରମ୍ପରିକ ପ୍ରଦେଶର ଏକତାକୁ ସୂଚାଇଥାନ୍ତି । ଏହି ପାଞ୍ଚଟି ପ୍ରଦେଶ ହେଉଛି - ନିଜେ ଚୀନ୍, ସିଂକିଆଂ, ମଙ୍ଗୋଲିଆ, ମାଞ୍ଚୁରିଆ ଓ ତୀବ୍ବତ ।



ଚୀନ୍ ଦେଶର ବିଚାରରେ ସଂଖ୍ୟା ପାଞ୍ଚର ଏକ ସାଙ୍କେତିକ ଗୁରୁତ୍ୱ ବି ରହିଛି । ପତାକାରେ ଏଗୁଡିକ ଏପରି ଏକାଠି ରହି ଦେଶର ଜାତୀୟ ସଂହତିକୁ ସୂଚାଉଛନ୍ତି । ୧୯୩୨ ମସିହାରୁ ଚୀନ୍‌ରେ ଗୋଟିଏ ଲାଲ୍ ପତାକା ଚଳି ଆସୁଥିଲା । ୧୯୩୨ ବେଳକୁ କିଆଂସି ପ୍ରଦେଶରେ ଚୀନ୍ ସୋଭିଏତ୍ ସାଧାରଣତନ୍ତ୍ର ପ୍ରତିଷ୍ଠିତ ହେଲା । ସେତେବେଳେ ଏହାର ଲାଲ୍ ପତାକାରେ ଗୋଟିଏ ସୁନେଲି

ତାରା, ଗୋଟିଏ ହାତୁଡ଼ି ଓ ଗୋଟିଏ ଦାଆ ଚିହ୍ନ ରହିଥିଲା । କିନ୍ତୁ ୧୯୪୯ ମସିହା ବେଳକୁ ଚୀନ୍‌ର ବିଖ୍ୟାତ କମ୍ୟୁନିଷ୍ଟ ନେତା ମାଓ-ସେ-ତୁଙ୍ଗ୍ ନିଜ ସେନାବାହିନୀକୁ ନେଇ ଚିଆଂକାଇ-ଶେକ୍ ନେତୃତ୍ୱରେ ପରିଚାଳିତ ଜାତୀୟତାବାଦୀମାନଙ୍କୁ ବାହାର କରିଦେଲେ । ସେବେଠାରୁ ଆଜିର ପତାକାଟିକୁ ଜାତୀୟ ପତାକା ରୂପେ ଗ୍ରହଣ କରାଗଲା ।

*ଜାପାନର ପତାକା* : ଜାପାନର ପତାକାର ମଝିଭାଗରେ ଗୋଟିଏ ନାଲିଆ ଗୋଲେଇ ରହିଥିବାର ଦେଖାଯାଏ । ଏହାକୁ ଜାପାନ୍‌ର ଆକାଶରେ ସୂର୍ଯ୍ୟ ବୋଲି ଧରାଯାଏ । 'ସୂର୍ଯ୍ୟୋଦୟର ଦେଶ' ରୂପେ ଜାପାନ ସଭିଙ୍କ ପାଇଁ ଜଣାଶୁଣା । ଜାପାନ୍‌ର ନାମ ବି ଏହାକୁ ନେଇ କରାଯାଇଛି । ଜାପାନ୍‌ର ମୂଳ ନାମ ହେଉଛି ନିହନ୍-କୋକୁ (ଉଦୟମାନ ସୂର୍ଯ୍ୟର ଦେଶ) । ଏଠାରେ ଦେଶର ନାଁ ଓ ପତାକାରେ ଏହି ଭାବଟି ରହିଛି । ବହୁତ ଆଗରୁ ଜାପାନରେ ଏପରି ନାଲି ଗୋଲେଇ ଥିବା ପତାକା ଚଳି ଆସୁଥିଲା । ବିଶେଷ କରି ଜାପାନର ସମ୍ରାଟ ଓ ଯୋଦ୍ଧାମାନେ ଅନେକ ଶତାବ୍ଦୀ ଧରି ଏପ୍ରକାରର ପତାକା ବ୍ୟବହାର କରି ଚାଲିଥିଲେ । ୧୮୭୨ ମସିହାରେ ଏହାକୁ ଜାତୀୟ ପତାକା ରୂପେ ସ୍ୱୀକୃତି ମିଳିଲା । ଜାପାନର ଜଳବାହିନୀ ପତାକାରେ ଏହି ସୂର୍ଯ୍ୟ ଦେହରୁ ୧୬ଟି କିରଣରେଖା ବାହାରିଥିବାର ଦେଖିବାକୁ ମିଳିଥାଏ ।



## ପୃଥିବୀର ଆଉ କେତେକ ବିଶେଷ ପତାକା

*ଋଷ୍‌ର ପତାକା* : ଋଷିଆ ପତାକାକୁ ଏଯାଏଁ ପୃଥିବୀର ସବୁଠୁ ସୁନ୍ଦର ପତାକାଗୁଡ଼ିକ ମଧ୍ୟରେ ଧରାଯାଉଥିଲା । ପ୍ରାୟ ୭୦ ବର୍ଷ ଧରି ପୂର୍ବର ସୋଭିଏତ୍ ସୋସିଆଲିଷ୍ଟ ରିପବ୍ଲିକ୍ ୧୫ଟି କମ୍ୟୁନିଷ୍ଟ୍ ରାଜ୍ୟକୁ ନେଇ , ଏକ ବିଶ୍ୱଶକ୍ତି ରୂପେ ଠିଆ ହୋଇଥିଲା । ଏମାନଙ୍କ ମଧ୍ୟରେ ସବୁଠୁ ବଡ ଥିଲା ଋଷିଆ । ଏଠାରେ ୧୯୧୮ ମସିହାରେ ଏହି ଲାଲ୍ ପତାକାଟିକୁ ଗ୍ରହଣ କରାଯାଇଥିଲା । ଏହାର ସାଥି ରିପବ୍ଲିକ୍‌ଗୁଡ଼ିକର ପତାକା ବି ଲାଲ୍ ରଙ୍ଗର ଥିଲା । କେତେକଙ୍କର ପତାକା ଉପରେ ସ୍ୱତନ୍ତ୍ର ଛବି ବି ଥିଲା । କିନ୍ତୁ ସବୁଥିରେ ସୁନେଲି ରଙ୍ଗର ତାରା, ଦାଆ ଓ ହାତୁଡ଼ିର ଚିହ୍ନ ଥିଲା । କମ୍ୟୁନିଷ୍ଟ ପାର୍ଟି ଅଧୀନରେ ଶିଳ୍ପ ଓ କୃଷି ଶ୍ରମିକମାନଙ୍କର ସଙ୍ଗଠନକୁ ଏହା ପ୍ରତିନିଧିତ୍ୱ କରେ ।



*(ପୂର୍ବତନ ସୋଭିଏତ୍ ପତାକା)*



*(ଋଷିଆର ପତାକା)*

୧୯୯୧ରେ ସୋଭିଏତ୍ ଋଷରେ ପରିବର୍ତ୍ତନର ସ୍ୱର (ଗ୍ଲାସ୍‌ନୋଷ୍ଟ୍) ଆରମ୍ଭ ହେଲା । ଦେଶଟି ଖଣ୍ଡ ଖଣ୍ଡ ହୋଇ ଅଲଗା ହୋଇଗଲା । ପ୍ରାକ୍‌ସୋଭିଏତ୍ ଦଳର ଅନେକ ପତାକା ପୁଣି ମୁଣ୍ଡ ଟେକିଲା ।

*ମିଶର୍‌ର ପତାକା* : ମିଶରର ପତାକା ବି ଏକ ତ୍ରିରଙ୍ଗା ପତାକା । ଏହାର ଉପର ଭାଗ ଲାଲ, ତଳଭାଗ କଳା ଓ ମଝିଟି ଧଳା । ପତାକାଟିର ମଝିରେ ଗୋଟିଏ ସୁନେଲି ଛଞ୍ଚାଣ ପକ୍ଷୀର ଛବି ରହିଛି । ମିଶରର ଏହି ପତାକାଟି ୧୯୮୪ ମସିହାରେ ଜାତୀୟ ପତାକା ରୂପେ ସ୍ୱୀକୃତି ପାଇଲା । ଏହି ପତାକାଟିର ୧୯୫୨ ମସିହା ବେଳର ମିଶର ପତାକା ସହ ବେଶ୍ ମେଳ ରହିଛି । ସେହି ସମୟରେ ମିଶରରେ ଗୋଟିଏ ଜନ ଆନ୍ଦୋଳନ ହୋଇଥିଲା ଓ ସମ୍ରାଟଙ୍କୁ ହଟାଇ ଦିଆଯାଇଥିଲା । ଏହା ହିଁ ଲାଲ୍, ଧଳା ଓ କଳା ରଙ୍ଗଗୁଡ଼ିକୁ ଅଧିକ ଲୋକପ୍ରିୟ କରିଥିଲା । ଏହାପରେ ଅନେକ ଆରବ ଦେଶ ବି ଏହି ରଙ୍ଗଗୁଡ଼ିକୁ ନିଜ ପତାକାରେ ନକଲ କରିଥିଲେ ।

ପ୍ରଥମେ ୧୯୫୮ରେ ଏଗୁଡ଼ିକୁ ଜାତୀୟ ପତାକାରେ ରଖାଯାଇଥିଲା । ସେ ସମୟରେ ମିଶର ସିରିଆ ସହ ମିଶି ମିଳିତ ଆରବ ଗଣତନ୍ତ୍ର ରୂପେ ଜଣାଥିଲା । ସେହି ସମୟରେ ପତାକାଟିର ମଝି ଭାଗରେ ଦୁଇଟି ଛୋଟ ସବୁଜ ତାରା ଥିଲା, ଯାହା ଏହି ଦେଶ ଦୁଇଟିକୁ ହିଁ ବୁଝାଉଥିଲା । ଏବେ ବି ସିରିଆର ପତାକାରେ ଏହା ଦେଖିବାକୁ ମିଳେ । ୧୯୬୧ ମସିହାରେ ଏହି ମେଳକୁ ଭାଙ୍ଗି ଦିଆଯାଇଥିଲା । କିନ୍ତୁ ମିଶର ୧୯୭୨ ମସିହା ଯାଏଁ ତା'ର ଏହି ପତାକାକୁ ବ୍ୟବହାର କରି ଚାଲିଲା । ସେହି ବର୍ଷ ମିଶର, ସିରିଆ ଓ ଲିବିଆ ଆରବ ରିପବ୍ଲିକ୍ସ ଫେଡେରେସନ୍‌ରେ ଯୋଗ ଦେଲେ । ଏସମସ୍ତଙ୍କର ପତାକା ଏକା ରକମର ଥିଲା । ଏକା ରଙ୍ଗ ସାଙ୍ଗକୁ ମଝିରେ ସୁନେଲି ବାଜର ଛବି ଥିଲା । ୧୯୭୭ ମସିହା ବେଳକୁ ଲିବିଆ ଏହି ସଙ୍ଘରୁ ଓହରିଗଲା । ତେଣୁ ସଙ୍ଘଟି ଭାଙ୍ଗିଗଲା । କିନ୍ତୁ ସିରିଆ ଓ ମିଶର ଏବେ ବି ପତାକାଟିକୁ ବ୍ୟବହାର କରି ଚାଲିଲେ । ୧୯୮୪ ମସିହାରେ ଏହି ସୁନେଲି ବାଜ ଜାଗାରେ ଗୋଟିଏ ସୁନେଲି ଛଞ୍ଚାଣ ସ୍ଥାନ ପାଇଲା । ଏଯାଏଁ ଏହା ଏପରି ଚାଲିଆସିଛି ।

ଆଗର ମିଶରର ପତାକାରେ ଥିବା ଏହି ସୁନେଲି ବାଜଟି ମହାମାନବ ମହମ୍ମଦଙ୍କର ବଂଶକୁ ସୂଚାଉଥିଲା । କିନ୍ତୁ ନୂଆ ପତାକାରେ ଥିବା ସୁନେଲି ଛଞ୍ଚାଣଟି ଆରବର ବୀର ସାଲାଦ୍ଦିନ୍‌ଙ୍କର ପ୍ରତିନିଧିତ୍ୱ କରୁଛି । ଏହି ଛଞ୍ଚାଣର ଛାତି ପାଖରେ ଗୋଟିଏ ଢାଲର ଛବି ରହିଛି । ପୂରା ଛଞ୍ଚାଣଟି ସୁନେଲି ରଙ୍ଗରେ କରାଯାଇଥାଏ । ଛଞ୍ଚାଣ ତଳକୁ ମିଶରୀୟ ଆରବ ସାଧାରଣତନ୍ତ୍ର ବୋଲି ଲେଖାଥାଏ । ମିଶରର ରାଷ୍ଟ୍ରପତିଙ୍କ ପତାକା କିଛି ପରିମାଣରେ ଅଲଗା ହୋଇଥାଏ । ଏହାର ଭିତର ପଟର ଉପରି ଭାଗରେ ଛଞ୍ଚାଣଟିର ଦ୍ୱିତୀୟ ଛବିଟିକୁ ଦିଆଯାଇଥାଏ ।

*ଆଣ୍ଟିଗୁଆ - ବାର୍‌ବୁଡାର ପତାକା* : ଏହା ୱେଷ୍ଟଇଣ୍ଡିଜ୍ ଦ୍ୱୀପପୁଞ୍ଜର ଏକ ଦେଶ । ଏହି କାରିବିଆନ୍ ଦ୍ୱୀପପୁଞ୍ଜର ଆଉ କିଛି ଦ୍ୱୀପ ହେଉଛି - ସେଣ୍ଟ୍ କ୍ରୀଷ୍ଟୋଫର୍, ନେଭିସ୍ ଓ ଆଙ୍ଗିଲା । ଏ ସମସ୍ତଙ୍କ ପରି ଆଣ୍ଟିଗୁଆ-ବାରବୁଡା ଦ୍ୱୀପ ୧୯୬୭ ମସିହାରେ ଗ୍ରେଟ୍ ବ୍ରିଟେନ୍‌ର ଏକ ସହଯୋଗୀ ରାଷ୍ଟ୍ର ରୂପେ ସ୍ୱୟଂ ଶାସନ ଅଧିକାର ପାଇଲା । ସେତେବେଳେ ଦେଶର ପତାକା ତିଆରି ପାଇଁ ସେଠାରେ ପ୍ରସ୍ତୁତି ଚାଲିଲା । ପ୍ରାୟ ୬୦୦ ଜଣ ଶିଳ୍ପୀ ଏଥିପାଇଁ ନିଜର ନମୁନା ଦେଲେ । ଏଥିରୁ ଆଜିର ପତାକାଟିକୁ ବଛାଗଲା । ଏହି ଆୟତାକାର ପତାକାଟିକୁ ମୁଖ୍ୟତଃ ତିନି ଭାଗରେ ବଣ୍ଟା ଯାଇପାରେ । ଏହାର ଉପର ଦୁଇ ମୁଣ୍ଡକୁ ତଳ ଭାଗର ମଝି ବିନ୍ଦୁ ସହ ଯୋଡି ତିନୋଟି ତ୍ରିଭୂଜ ଅଙ୍କାଯାଇଛି । ବାହାର ତ୍ରିଭୂଜ ଦୁଇଟିକୁ କେବଳ ଲାଲ୍ ରଙ୍ଗରେ ସଜାଯାଇଛି । ମଝି ତ୍ରିଭୂଜରେ ତିନୋଟି ଅସମାନ କିନ୍ତୁ ସମାନ୍ତରାଳ ଗାର ଟଣାଯାଇଛି । ଏହାର ତଳ ଭାଗଟି ଧଳା, ମଝିଟି ନୀଳ ଓ ଉପରଟି କଳା । ଉପରେ ଭାଗର ମଝିରେ ଏକ ସୁନେଲି ସୂର୍ଯ୍ୟ ନୀଳ ରଙ୍ଗ ମଧ୍ୟରୁ ଉଦୟ ହେଲା ପରି ଦେଖାଯାଉଛି ।

ଏହି ରଙ୍ଗଗୁଡିକର ସ୍ୱତନ୍ତ୍ର ଗୁରୁତ୍ୱ ରହିଛି । ଲାଲ୍ ରଙ୍ଗ ଆଣ୍ଟିଗୁଆ ଲୋକଙ୍କର ଶକ୍ତିର ସୂଚକ । ନୀଳ ରଙ୍ଗଟି ଭବିଷ୍ୟତ ପାଇଁ ଆଶାର ପ୍ରତୀକ । କଳା ରଙ୍ଗଟି ନିଗ୍ରୋ ଲୋକଙ୍କ ରଙ୍ଗର ପ୍ରତୀକ । ଏଥର ମଝି ତ୍ରିଭୂଜକୁ ଦେଖିବା । ଏଥିରେ ଥିବା ସୁନେଲି, ନୀଳ ଓ ଧଳା ହେଉଛି ପର୍ଯ୍ୟଟକମାନଙ୍କୁ ଆକର୍ଷଣ କରୁଥିବା ଆଣ୍ଟିଗୁଆର ସୌନ୍ଦର୍ଯ୍ୟ । ଏହାର ମୁଖ୍ୟ ଆକର୍ଷଣଗୁଡିକ ହେଉଛି - ସୂର୍ଯ୍ୟୋଦୟ, ସମୁଦ୍ର ଓ ସୁନ୍ଦର ବେଳାଭୂମି । ୧୯୮୧ ମସିହା ନଭେମ୍ବର ଏକ ତାରିଖରେ ଏହି ଦ୍ୱୀପଟି ସ୍ୱାଧୀନ ହେଲା ।

*ବ୍ରାଜିଲ୍‌ର ପତାକା* : ବ୍ରାଜିଲ୍‌ର ଆୟତାକାର ପତାକାଟି ସବୁଜ ରଙ୍ଗର । ଏହାର ମଝି ଭାଗରେ ଗୋଟିଏ ହଳଦିଆ ଠିକିରି ରହିଥାଏ । ଏହା ମଝିରେ ନୀଳ ରଙ୍ଗରେ ଖଗୋଳ ମଣ୍ଡଳର ଏକ ଆଂଶିକ ଛବି ଦେଖିବାକୁ ମିଳେ । ଏହା ବ୍ରାଜିଲ୍‌ର ରାଜଧାନୀ ରିଓ-ଡି-ଜେନିରୋ ଉପରର ରାତି ଆକାଶର ମାନଚିତ୍ରକୁ ବୁଝାଏ । ଏହି ଗୋଲକଟି ଉପରେ ଗୋଟିଏ ବଙ୍କା ପଟି ଉପରେ ଲେଖାଥାଏ : 'ଶୃଙ୍ଖଳା ଓ ବିକାଶ' । ଏହାର ଶାଗୁଆ ରଙ୍ଗଟି ବ୍ରାଜିଲ୍‌ର ବିରାଟ ଜଙ୍ଗଲି ଇଲାକାର ପ୍ରତୀକ । ଏହାର ହଳଦିଆ ରଙ୍ଗର ଡାଏମଣ୍ଡ୍ ଠିକିରିଟି ବ୍ରାଜିଲ୍‌ର ପ୍ରଚୁର ଖଣିଜ ସମ୍ପଦର ସୂଚକ । ଆଗରୁ ଏହି ଦେଶଟି ପର୍ତ୍ତୁଗାଲ୍

ଅଧୀନରେ ଥିଲା । ୧୮୨୨ ମସିହାରେ ବ୍ରାଜିଲର ଶାସକ ବ୍ରାଜିଲକୁ ସ୍ୱାଧୀନ ବୋଲି ଘୋଷଣା କଲେ । ସେତେବେଳେ ଯେଉଁ ପତାକାଟିକୁ ଗ୍ରହଣ କରାଗଲା, ତାହା ପ୍ରାୟ ଆଜିର ପତାକା ପରି ଥିଲା ୧୮୮୯ ମସିହାରେ ଏହାକୁ କିଛି ପରିମାଣରେ ବଦଳାଯାଇ ଆଜିର ରୂପ ଦିଆଗଲା । ଗୋଲକ ଉପରେ ଥିବା ତାରାଗୁଡିକ ବ୍ରାଜିଲ୍ ସଂଘର ବିଭିନ୍ନ ରାଜ୍ୟକୁ ସୂଚାଉଥାନ୍ତି । ଆଗରୁ ଏଥିରେ ୨୧ଟି ରାଜ୍ୟ ପାଇଁ ତାରା ଚିହ୍ନ ରହୁଥିଲା । କିନ୍ତୁ ୧୯୯୨ ମସିହାରେ ରାଜ୍ୟ ସଂଖ୍ୟା ୨୭କୁ ବଢିବା ସାଙ୍ଗକୁ ତାରାସଂଖ୍ୟା ମଧ ଏକା ପରିମାଣରେ ବଢିଲା ।

*ଆର୍ଜେଣ୍ଟିନାର ପତାକା :*

ଆର୍ଜେଣ୍ଟିନାର ଆୟତାକାର ପତାକାଟିରେ ତିନୋଟି ସମାନ୍ତର ଭାଗ ଦେଖିବାକୁ ମିଳେ । ଏହାର ଉପର ଓ ତଳ ପଟିରେ ଏକା ପ୍ରକାରର ହାଲୁକା ନୀଳ ରଙ୍ଗ ଦେଖିବାକୁ ମିଳେ । କିନ୍ତୁ ମଝି ପଟିଟି ଧଳା ରହିଥାଏ । ଆର୍ଜେଣ୍ଟିନାର ଫୁଟବଲ୍ ଖେଳାଳୀମାନେ ବି ଏହି ରଙ୍ଗର ପୋଷାକ ପିନ୍ଧିଥାନ୍ତି । ଆର୍ଜେଣ୍ଟିନାବାସୀଙ୍କ ପାଇଁ ଏହି ରଙ୍ଗ ଦୁଇଟିର ଗୁରୁତ୍ୱ ବେଶ୍ ବେଶୀ । ୧୯ଶ ଶତାବ୍ଦୀ ଆଗରୁ ଆର୍ଜେଣ୍ଟିନା ସ୍ପେନ୍‌ର ଅଧୀନରେ ଥିଲା । ସେମାନଙ୍କ କବଳରୁ ମୁକୁଳିବା ପାଇଁ ୧୯ଶ ଶତାବ୍ଦୀରେ ଆର୍ଜେଣ୍ଟିନାବାସୀ ସ୍ୱାଧୀନତା ସଂଗ୍ରାମ କରିଥିଲେ । ସେହି ସମୟରେ ଏହି ଦୁଇ ରଙ୍ଗ ସେମାନଙ୍କର ଜାତୀୟ ପ୍ରତୀକ ଥିଲା । ମୁକ୍ତି ସୈନିକଙ୍କ ଟୋପିରେ ଏହି ଚିହ୍ନ ରହିଥିଲା । ୧୮୧୦ ମସିହା ମେ ମାସ ୨୫ ତାରିଖରେ ବୁଏନସ୍ ଆରେସ୍ ଠାରେ ଆର୍ଜେଣ୍ଟିନାବାସୀ ବିଶାଳ ସଂଖ୍ୟାରେ ଏକାଠି ହୋଇ ସ୍ପେନ୍ ହାତରୁ ଆର୍ଜେଣ୍ଟିନାର ମୁକ୍ତି ପାଇଁ ଦାବୀ କରିଥିଲେ । ସେହି ସମୟରେ ସେମାନଙ୍କ ହାତରେ ଏହି ରଙ୍ଗର ଥିବା ପ୍ରତୀକ ଥିଲା । ଏହି ଆକାଶ ନୀଳ ଓ ଧଳା ରଙ୍ଗ ପ୍ରତି ଆଦର କ୍ରମଶଃ ବହୁତ ବଢିଲା । ଏକ ବିପ୍ଳବର ସଙ୍କେତ ରୂପେ କ୍ରମେ ଦେଶସାରା ଲୋକ ଏହାକୁ ଆଦରି ନେଲେ ।

୧୮୧୨ ମସିହରେ ରୋଜାରିଓ ନଗରରେ ଏହି ରଙ୍ଗ ଥିବା ସାମରିକ ପତାକାଟିକୁ ଉତ୍ତୋଳନ କରାଗଲା । ୧୮୧୬ ମସିହା ଜୁଲାଇ ୯ ତାରିଖରେ ବୁଏନସ୍ ଆରେସ୍ ନଗର ପରେ ପରେ ସାରା ଆର୍ଜେଣ୍ଟିନା ଦେଶ ସ୍ପେନ୍ କବଳରୁ ମୁକୁଳି ସ୍ୱାଧୀନତାର ମର୍ଯ୍ୟାଦା ପାଇଲା । ଏହାର ଦୁଇ ସପ୍ତାହ ପରେ ଜୁଲାଇ ୨୫ ତାରିଖରେ ଆକାଶ ନୀଳ ଓ ଧଳା ରଙ୍ଗରେ ସଜ୍ଜିତ ପତାକାଟି ସ୍ୱାଧୀନ ଦେଶର ପ୍ରିୟ ଜାତୀୟ ପତାକା ରୂପେ ସରକାରୀ ସ୍ୱୀକୃତି ପାଇଲା ।

୧୮୧୮ ମସିହା ବେଳକୁ ଆର୍ଜେଣ୍ଟିନାର ପତାକାର ମଝିରେ ଗୋଟିଏ ଉଜ୍ଜ୍ୱଳ ସୂର୍ଯ୍ୟର ଛବି ଥିଲା । ଏହି ଛବିଟିକୁ ଆର୍ଜେଣ୍ଟିନାର ଜାତୀୟ ପ୍ରତୀକ ରୂପେ ଗ୍ରହଣ କରାଯାଇଛି । ଏହି ଉଜ୍ଜ୍ୱଳ ସୂର୍ଯ୍ୟଟିର ଏକ ବଳିଷ୍ଠ ମାନେ ଅଛି । ଘନ ବାଦଲ ଭିତରେ ସୂର୍ଯ୍ୟ ମୁଣ୍ଡ କାଢିବା ପରି ୧୮୧୦

ମସିହା ମେ' ୨୫ ତାରିଖରେ ବୁଏନସ୍ ଆରେସ୍ ଠାରେ ଆର୍ଜେଣ୍ଟିନାବାସୀ ଏକାଠି ହୋଇ ଦେଶର ସ୍ୱାଧୀନତା ଦାବୀ କରିଥିଲେ । ଘଟଣାଟିର ଏହା ଏକ ସାଙ୍କେତିକ ଉପସ୍ଥାପନା ଓ ସମ୍ମାନ ପ୍ରଦର୍ଶନ ।

ଆର୍ଜେଣ୍ଟିନାର ପତାକା ରଙ୍ଗ ଓ ମେ'ମାସର ଉଜ୍ଜ୍ୱଳ ସୂର୍ଯ୍ୟକୁ ଉରୁଗୁଏବାସୀ ବି ପସନ୍ଦ କରିଥିଲେ । ସେମାନେ ବି ସଂଗ୍ରାମ କରି ସ୍ପେନ୍ ଠାରୁ ନିଜର ସ୍ୱାଧୀନତା ହାସଲ କରିଥିଲେ । ତେଣୁ ସେମାନଙ୍କ ପତାକାରେ ବି ଏହି ରଙ୍ଗ ଓ ମେ' ମାସର ସୂର୍ଯ୍ୟର ଛବି ଦେଖିବାକୁ ମିଳିଥାଏ । କେନ୍ଦ୍ରୀୟ ଆମେରିକାର ଆଉ କେତେକ ଦେଶ ମଧ୍ୟ ଆର୍ଜେଣ୍ଟିନାର ଏହି ପତାକା ଦ୍ୱାରା ପ୍ରଭାବିତ ହୋଇଥିଲେ ଓ ଏହାକୁ ନିଜ ରଚି ଅନୁସାରେ ନକଲ କରିଥିଲେ ।

## ପତାକା ଆକୃତି

*ପତାକାର ବିବିଧ ଆକାର* : ଦେଶ ବିଦେଶର ପତାକାର ରଙ୍ଗ ଓ ସଙ୍କେତ ଯେପରି ଅଲଗା ଏଗୁଡିକର ଆକାର ସେପରି ବିବିଧ ଓ ବିଚିତ୍ର ରକମର ହୋଇଥାଏ । କିନ୍ତୁ ସବୁ ପତାକାକୁ ଆମେ କିପରି ଦେଖିପାରିବା ? ଏହି ପୁସ୍ତିକାଟିରେ ଏପରି କିଛି ପତାକାର ଆକାର ଓ ପ୍ରକାର ବିଷୟରେ ସୂଚନା ଦିଆଯାଇଛି । ପତାକା ମାନଚିତ୍ରକୁ ଦେଖିଲେ ବି ଆମେ ସବୁ ଦେଶର ମାନଚିତ୍ରକୁ ଏକାଠି ଦେଖିପାରିବା ଓ ଏଗୁଡିକୁ ତୁଳନା କରିପାରିବା ।

କିନ୍ତୁ ଗୋଟିଏ ଗୋଟିଏ ସମୟ ବା ଜାଗାରେ ବିଭିନ୍ନ ଦେଶ ପତାକାକୁ ଏକାଠି ଦେଖିବାର ସୁଯୋଗ ମିଳିଥାଏ । ବିଭିନ୍ନ ବିଶ୍ୱ ସମ୍ମିଳନୀ, କ୍ରୀଡା ପ୍ରତିଯୋଗିତା ଆଦି ଏଦିଗରୁ ଗୋଟିଏ ଲେଖାଏଁ ସୁଯୋଗ । ସେଠାରେ ପୃଥିବୀସାରା ଦେଶର ଦକ୍ଷ ବ୍ୟକ୍ତିମାନେ ନିଜ ପତାକା ଓ ଦକ୍ଷତା ସହ ଏକାଠି ହୋଇଥାନ୍ତି । ବିଶ୍ୱ ଅଲିମ୍ପିକ୍ କ୍ରୀଡା ଏପରି ଏକ ସୁବର୍ଣ୍ଣ ପେଣ୍ଠ ବୋଲି କୁହାଯାଇପାରେ । ସେପରି ଆଉ ଏକ ସ୍ଥାନ ହେଉଛି ନ୍ୟୁୟର୍କ ଠାରେ ଅବସ୍ଥିତ ଜାତିସଂଘ କାର୍ଯ୍ୟାଳୟ । ଏଠାରେ ପୃଥିବୀର ଅନେକ ଦେଶର ପତାକା ଏକାଠି ଉଡୁଥିବାର ଦେଖିବାକୁ ମିଳେ । କିନ୍ତୁ ଏଠାରେ ଉଡୁଥିବା ଅଧିକାଂଶ ପତାକା ଆୟତାକାର ମନେହୁଏ ।



ଏଗୁଡିକର ଆକର୍ଷଣୀୟ ରଙ୍ଗ, ଏଥିରେ ଥିବା ପ୍ରତୀକ ଓ ଏଗୁଡିକୁ ସଜାଯିବାର କ୍ରମବିଧି ଅତି ଚମତ୍କାର ମନେ ହୋଇଥାଏ । ଏଗୁଡିକୁ ସମତଳ, ଆୟତାକାର ରଖିବା ପରିବର୍ତ୍ତେ ଏହାକୁ ବିଭିନ୍ନ ଜାଗାରେ କାଟି ବିଭିନ୍ନ ଆକୃତି ବନାଯିବାର ବିଶେଷ ଆବଶ୍ୟକତା ଥିବା ପରି ମନେ ହୁଏ ନାହିଁ । କିନ୍ତୁ ଇତିହାସକୁ ଦେଖିଲେ ବିବିଧ ଆକାରର ପତାକା କରାଯାଇଥିବାର ଲକ୍ଷ୍ୟ କରିହୁଏ ।

ପତାକାର ଇତିହାସକୁ ଲକ୍ଷ୍ୟ କଲେ ଆମେ ଏପରି ବିବିଧ ଆକାର ପାଇପାରିବା । ମଧ୍ୟ ଯୁଗ ସମୟରେ ବିଭିନ୍ନ ଯୁଦ୍ଧ ସମୟରେ ଜଣେ ଜଣେ ଯୋଦ୍ଧାଙ୍କ ଅଧୀନରେ ରହି ସ୍ୱତନ୍ତ୍ର ଭାବରେ ଅନେକ ସୈନ୍ୟଦଳ ଗୋଟିଏ ଦେଶ ବା ରାଜ୍ୟ ତରଫରୁ ଲଢୁଥିଲେ । ଏମାନଙ୍କର ସ୍ୱତନ୍ତ୍ର ପରିଚୟ

ପାଇଁ ପ୍ରତି ଦଳ ସ୍ୱତନ୍ତ୍ର ଧରଣର ପତାକା ବ୍ୟବହାର କରୁଥିଲେ । ଛୋଟ ଛୋଟ ପତାକା ସବୁରୁ ଆରମ୍ଭ କରି ଯୋଦ୍ଧାଙ୍କ ବର୍ଚ୍ଛା ସହ ଯୋଡା ପତାକା ଦେଖିବାକୁ ମିଳୁଥିଲା । ଏଗୁଡିକର ଆକାର ଓ ପ୍ରକାର ବିବିଧ ରକମର ଥିଲା ।

ଏପରି ବିବିଧ ଆକାରରୁ କିଛି ଏଠାରେ ସୂଚାଯାଉଛି । ପତାକାର ଭିତର ଅଂଶରେ ବି ବିଭିନ୍ନ ପ୍ରକାରର ଡିଜାଇନ୍ ରହିଆସିଛି । ଏହି ବିବିଧତା ମଧ୍ୟରେ ରହିଅଛି : ବହୁଲାଞ୍ଜିଆ ଗନ୍‌ଫାନନ୍ ପତାକା, ଉପରୁ ତଳକୁ ଝୁଲୁଥିବା ଗନ୍‌ଫାଲନ୍ ପତାକା, ଫ୍ରାନସ୍‌ରେ ଚାର୍ଲ୍‌ମାନଙ୍କ ଦ୍ୱାରା ଉଡାଯାଇଥିବା ଓରିଫ୍ଲେମ୍ ପତାକା ଓ ଜର୍ମାନୀରେ ନାଁ କରିଥିବା ଏକଲାଞ୍ଜିଆ ସ୍ୱେଙ୍କେଲ୍ ପତାକା । ସମୁଦ୍ରର ପତାକାଗୁଡିକ ମଧ୍ୟରେ ଲମ୍ବା ସରୁଲାଞ୍ଜିଆ ପତାକାର ଏକ ସ୍ୱତନ୍ତ୍ର ଆକର୍ଷଣ ରହିଥିଲା । ଜାହାଜର ମାସ୍ତୁଲ ଉପରେ ଉଡିବା ସମୟରେ ଏହାର ସୁନ୍ଦର ଦୃଶ୍ୟ ବେଶ୍ ନାଟକୀୟ ମନେ ହେଉଥିଲା ।



*(ବିଭିନ୍ନ ଆକାରର କିଛି ପୁରାତନ ପତାକା)*

ପ୍ରାଚ୍ୟ ଦେଶଗୁଡିକରେ ଆହୁରି ଅସାଧାରଣ ଆକାରର ପତାକାମାନ ଦେଖିବାକୁ ମିଳୁଥିଲା । ଜାପାନ୍‌ର ପବନଥଳୀ ପତାକା, ଚେଙ୍ଗିଜ୍ ଖାନ୍‌ଙ୍କ ଦ୍ୱାରା ବ୍ୟବହୃତ ତିନିକୋଣିଆ ଲାଞ୍ଜବାଲା ପତାକା ନିଶ୍ଚୟ ବିଶେଷ ଧରଣର ଥିଲା ।

କେବଳ ବାହାରର ଆକୃତି ନୁହେଁ, ପତାକାଗୁଡିକ ଭିତର ପାଖର ଆକୃତି ଓ ଚିତ୍ରଗୁଡିକ ବି ବେଶ୍ ବିବିଧ ଓ ଆକର୍ଷଣୀୟ ମନେ ହୋଇଥାଏ । ପତାକାଗୁଡିକରେ ଏକ ଅତି ସାଧାରଣ କ୍ରମ ହେଲା ସିଧା ବା ଲମ୍ବ ବାଗରେ ବିଭିନ୍ନ ପଟା ପଟା ଦାଗ । ଭାରତର ତ୍ରିରଙ୍ଗା ପତାକାର ତିନୋଟି ରଙ୍ଗ ପଟି ଏହାର ଏକ ଉଦାହରଣ ।

ଏହାଛଡା, ଏଥିରେ ଆହୁରି ଅନେକ ରକମର ଜଟିଳ ରଙ୍ଗକ୍ରମ ଓ ଡିଜାଇନ୍ ସବୁ ବି ଦେଖିବାକୁ ମିଳଥାଏ । ୟୁରୋପୀୟ ଆଭିଜାତ୍ୟର, ଛାପ ଏଥିରେ ଅନେକ ଜାଗାରେ ରହିଥାଏ ।



*( ପତାକା ଭିତରର କିଛି ଆକୃତି)*

ଏଠାରେ ବିଭିନ୍ନ ପତାକାର ଭିତରର ଡିଜାଇନ୍ ସବୁକୁ ଆମେ ଦେଖିବାକୁ ପାଉଛେ । କ୍ୟାଣ୍ଟନ୍ ଶ୍ରେଣୀର ପତାକା ଆମେ ଆମେରିକାର ତାରା ଓ ପଟି ଥିବା ପତାକା ଓ ଆଗରୁ ବ୍ରିଟେନ୍‌ର ଅଧୀନରେ ଥିବା ବିଭିନ୍ନ ରାଷ୍ଟ୍ର, ଯଥା : ଅଷ୍ଟ୍ରେଲିଆ, ନିଉଜିଲାଣ୍ଡ୍ ଆଦି ଦେଶର ପତାକାରେ ଦେଖିବାକୁ ପାଉଛେ । ପାନାମା ଦେଶରେ ଆମେ ଚଉଠା ପତାକାକୁ ଦେଖୁଛେ । ଚେକୋସ୍ଲୋଭାକିଆ, ଜୋର୍ଡାନ୍ ଓ ଗାଏନାରେ ଆମେ ତ୍ରିକୋଣୀ ପତାକା ଦେଖିପାରୁଛେ । କ୍ୱାତାର ପତାକାରେ ଆମେ କଟା କଟା କ୍ରମ ଦେଖି ପାରୁଛେ । ଗ୍ରୀନାଡା ଓ ମାଲଡିଭ୍‌ସ୍‌ର ପତାକାରେ ଆମେ ବାହାର ପଟର ବୋର୍ଡର୍‌କୁ ଦେଖିବାକୁ ପାଇବା ।

ପୃଥିବୀର ବିଭିନ୍ନ ପ୍ରାନ୍ତରେ ଥିବା ଖ୍ରୀଷ୍ଟଧର୍ମୀ ଦେଶଗୁଡ଼ିକର ପତାକାରେ ଆମେ 'କ୍ରଶ୍' ଚିହ୍ନକୁ ଦେଖିବାକୁ ପାଇଥାନ୍ତି । ଏଗୁଡ଼ିକ ମଧ୍ୟରେ ସେଣ୍ଟ୍ ଜର୍ଜ୍, ସେଣ୍ଟ୍ ଆଣ୍ଡ୍ରିଉ, ଆଦିଙ୍କ 'କ୍ରଶ୍' ସ୍କାଣ୍ଡିନେଭିଆ ଓ ଗ୍ରୀକ୍ 'କ୍ରଶ୍' ସବୁଠୁ ବେଶୀ ଦେଖିବାକୁ ମିଳେ । ଜାମାଇକାର ପତାକାରେ ଏହି ଉଭୟ ପ୍ରକାର 'କ୍ରଶ୍'ର ମିଶ୍ରଣ ଦେଖିବାକୁ ମିଳିଥାଏ । ଏଥିରେ ସେଣ୍ଟ୍ ଜର୍ଜ୍‌ଙ୍କ 'କ୍ରଶ୍' ସାଙ୍ଗକୁ ସାଲ୍‌ଟାଇର୍ ଡାଣ୍ଡା ବି ରହିଥାଏ ।

## ପତାକା ତିଆରିରେ ରାଜବଂଶର ଛାପ

ପାଶ୍ଚାତ୍ୟ ଦେଶଗୁଡ଼ିକରେ ଦେଖିବାକୁ ମିଳୁଥିବା ଅନେକ ପତାକାରେ ପୂର୍ବର ରାଜବଂଶ ଗୁଡ଼ିକର ପ୍ରଭାବ ଊଣା ଅଧିକେ ରହିଛି । ଅନେକ ପତାକାର ଆକାର ଢାଲ ପରି ଓ ଏହାର ଭିତରର ଅଳଙ୍କରଣକୁ ବିଭିନ୍ନ ପ୍ରକାରରେ ଗାରକାଟି କରାଯାଇଛି । ମଧ୍ୟଯୁଗର ୟୁରୋପରେ ବିଭିନ୍ନ ରାଜବଂଶର ଅଧିକ ପ୍ରଭାବ ରହିଥିଲା । ସେମାନେ ନିଜର ଆଡମ୍ବର ଦେଖାଇବା ପାଇଁ ବିବିଧ

ରକମର ପତାକାମାନ ବନାଇ କାମରେ ଲଗାଉଥିଲେ । ସେମାନେ ବିଭିନ୍ନ ପଦକ ଆଦି ବନାଇବା ପାଇଁ କଠୋର ନୀତି ନିୟମ ଜାରି କରୁଥିଲେ ଓ ଆକର୍ଷଣୀୟ ମାନର ପଦକ ଓ ପତାକା ବନାଉଥିଲେ । ଡାଲର ଆକାରକୁ ଭିତ୍ତି କରି ସେମାନେ ଏସବୁ ବନାଉଥିଲେ । ସେହି ସମୟର ରାଜକୀୟ ପତାକା ସବୁ ଆଧୁନିକ ପତାକାଗୁଡ଼ିକୁ ଯଥେଷ୍ଟ ପ୍ରଭାବିତ କରିଛି । ଏଠାରେ ଆମେ ଏପରି ଏକ ପୁରୁଣା ପତାକାର ଛବି ଦେଖୁଛେ ଯାହା ୧୩ଶ ରୁ ୧୬ଶ ଶତାବ୍ଦୀ ମଧ୍ୟରେ ସ୍ପେନ୍‌ରେ ବ୍ୟବହୃତ ହେଉଥିଲା । ଏଥିରେ ଦେଖାଯାଉଥିବା 'ସିଂହ' ଚିହ୍ନ ପରି ଆଉ କେତୋଟି ଚିହ୍ନ ସେ ସମୟରେ ଅଧିକ ଆଦୃତ ହୋଇଥିଲା । ସେଗୁଡ଼ିକ ହେଉଛି : ଫ୍ଲିଉର୍‌-ଡି-ଲିସ୍‌, କ୍ରୁଦ୍ଧ ସିଂହ ଓ ଗରୁଡ଼ ପକ୍ଷୀ ଆଜିକାଲି ଏହାପରି କାନାଡାର ମାପ୍‌ଲ୍‌ ପତ୍ର, ସେଣ୍ଟ୍‌ ଭିନ୍‌ସେଣ୍ଟ୍‌ର ଠିକିରି ଚିହ୍ନ ଓ ଜୋର୍ଡାନ୍‌ର ସେନାବାହିନୀର ଖଣ୍ଡା ଚିହ୍ନ ବି ଆକର୍ଷଣୀୟ ହୋଇପାରିଛି ।





ଫ୍ଲିଉର-ଡି-ଲିସ୍‌ | କ୍ରୁଦ୍ଧ ସିଂହ | ଗରୁଡ଼ ପକ୍ଷୀ | *ପାରମ୍ପରିକ*





ମାପ୍‌ଲ୍‌ ପତ୍ର | ଛନ୍ଦାଖଣ୍ଡା | ଠିକିରି | *ଆଧୁନିକ*

*( ପତାକାରେ ରାଜବଂଶର ଛାପ )*

ଆଜିକାଲିର ପତାକାଗୁଡ଼ିକରେ ଆଗପରି ରାଜବଂଶର ଛାପ ଆଉ ନାହିଁ । ଏହା ଅନେକ ପରିମାଣରେ କମିଯାଇଛି । ଆଗ ରାଜ୍ୟଟିର ଶାସକଙ୍କୁ ଆଧାର କରି ଦେଶର ପତାକାଟି ରୂପ ପାଉଥିଲା । କିନ୍ତୁ ଏବେକାର ପତାକାଗୁଡ଼ିକୁ ସମଗ୍ର ଦେଶଟିର ବିଶେଷତ୍ୱକୁ ଭିତ୍ତି କରି ଅଙ୍କାଯାଉଛି । ଏହାର ଉଦାହାରଣ ହେଉଛି : କାନାଡାର ମାପ୍‌ଲ୍‌ ପତ୍ର, ଲିସୋଥୋର ନଡାଟୋପି, ଜୋର୍ଡାନ୍‌ର ଯୁଦ୍ଧ ପତାକାରେ ଛନ୍ଦାଖଣ୍ଡା ଓ ସେଣ୍ଟ୍‌ ଭିନ୍‌ସେଣ୍ଟର ଠିକିରି ଚିହ୍ନ । ପର୍ତ୍ତୁଗାଲ୍‌ ଓ ଫିନ୍ଲାଣ୍ଡ୍‌ ଆଦି ଦେଶରେ ତାଙ୍କର ବିଶେଷଧରଣର ଅସ୍ତ୍ରଶସ୍ତ୍ରର ଛବିକୁ ସେମାନେ ପତାକାରେ ରଖିଥାନ୍ତି ।

ପାଶ୍ଚାତ୍ୟ ପରି ପ୍ରାଚ୍ୟରେ ମଧ୍ୟ ଦେଶର ଏପରି କେତେକ ବିଶେଷ ଗୁଣକୁ ପତାକାରେ ଦେଖିବାକୁ ମିଳେ । ମଧ୍ୟଯୁଗରେ ଜାପାନ୍‌ରେ ଯୋଦ୍ଧାମାନଙ୍କ ଟୋପିରେ ରାଜବଂଶର ପ୍ରତୀକ 'ମନ୍‌ସ୍‌' ଲାଗୁଥିଲା । କ୍ରମଶଃ ଏହାକୁ ଟୋପି ବଦଳରେ ପତାକାରେ ସ୍ଥାନ ଦିଆଗଲା । ଏହି

ଗୋଲିଆ ଚିତ୍ରଟିରେ ବେଳେ ବେଳେ ବିଭିନ୍ନ ଡେଣାଯୁକ୍ତ କୀଟ, ଫୁଲ ଆଦି ରହୁଥିଲା । କିନ୍ତୁ ଆଜି ତାହା ଯଥେଷ୍ଟ ବଦଳି ଯାଇଛି ଓ ଧଳା ପତାକାଟିରେ କେବଳ ଏକ ଉଜ୍ଜ୍ୱଳ ସୂର୍ଯ୍ୟ ରହିଛି ।

ଏଠାରେ ଆମେ ମଙ୍ଗୋଲିଆର ପୁରୁଣା ପତାକାର ପ୍ରତୀକଟିକୁ ଦେଖୁଛେ । ଏହାକୁ 'ସୋୟୋନ୍‌ବୋ' ପ୍ରତୀକ କୁହାଯାଏ । ପ୍ରକୃତରେ ଏହା ରାଜବଂଶର କୌଣସି ଚିହ୍ନ ନୁହେଁ । ଏହା ଦେଶର ଏକ ପାରମ୍ପରିକ ସଙ୍କେତ । ମଙ୍ଗୋଲିଆର ପୁରୁଣା ପତାକାରେ ଏଥିସହ କମ୍ୟୁନିଜ୍‌ମ୍‌ର ତାରା ଚିହ୍ନକୁ ଏକାଠି ରଖାଯାଉଥିଲା । କିନ୍ତୁ ୧୯୯୧ ମସିହାରେ ଏହି ତାରାଟିକୁ ହଟାଇ ଦିଆଗଲା । ଏଥିରେ ଏବେ ଥିବା ତିନୋଟି ଭାଗ ମଧ୍ୟରୁ ଭିତର ପାଖ ଭାଗଟିରେ ଉପରେ ଗୋଟିଏ ଛୋଟ ଶିଖା ଦେଖିବାକୁ ମିଳୁଛି । ଏହା ପ୍ରଗତିର ପ୍ରତୀକ । ଏହା ତଳକୁ ଥିବା ସୂର୍ଯ୍ୟ, ଚନ୍ଦ୍ର ଚିରନ୍ତନ ଜୀବନର ସୂଚକ । ତ୍ରିଭୁଜ ଦୁଇଟି ଶତ୍ରୁ ପ୍ରତି ଏକ ସତର୍କ ସୂଚକ, ସିଧାଗାର ଦୁଇଟି ସଚ୍ଚୋଟତା ଓ ଶକ୍ତିର ସଙ୍କେତ । ମଝିରେ ଥିବା ଇନ୍-ୟାଙ୍ଗ୍ ସଙ୍କେତଟି ସତର୍କତାର ପ୍ରତୀକ ।



## ଆଧୁନିକ ସଙ୍କେତ ଓ ପ୍ରତୀକ

ଆଜିର ପୃଥିବୀରେ ଅଧିକାଂଶ ଦେଶର ପତାକାରେ ତାଙ୍କ ନିଜର ବିଶେଷତ୍ୱକୁ ହିଁ ଗୁରୁତ୍ୱ ଦିଆଯାଇଛି । କେବଳ ଯେଉଁ ଦେଶଗୁଡ଼ିକ ଆଗରୁ ୟୁରୋପୀୟ ଦେଶଗୁଡ଼ିକର ଅଧୀନରେ ଥିଲା; ସେମାନଙ୍କ ପତାକାରେ ହିଁ ଉଣାଅଧିକେ ରାଜବଂଶର ଛାପ ଦେଖିବାକୁ ମିଳୁଛି । ପେରୁ ପରି ଦେଶର ପତାକା ଏହାର ଏକ ନମୁନା ।

ଅନ୍ୟ ଦେଶ ସବୁ ନିଜ ଦେଶର ବିଭିନ୍ନ ବିଶେଷ ବସ୍ତୁ ବା ଏକାଧିକ ବସ୍ତୁକୁ ନିଜର ଜାତୀୟ ସଙ୍କେତ ରୂପେ ପତାକାରେ ବ୍ୟବହାର କରିଥାନ୍ତି । କାନାଡାର ପତାକାରେ ମାପଲ୍ ପତ୍ର ଏପରି ଏକ ଉଦାହରଣ । ଏଗୁଡ଼ିକ ସେହି ଦେଶଟି ପାଇଁ ଏତେ ବିଶେଷ ଧରଣର ଯେ, ଏଗୁଡ଼ିକୁ ଦେଖିଲେ ଦର୍ଶକ ଆଗରେ ସେହି ଦେଶର ଛବି ନାଚିଯାଏ । ଯଥା : ଲେବାନନ୍‌ର ଏରସ (ସେଡାର୍-ଏକ ବିଶେଷ ଧରଣର ଦେବଦାରୁ) ଗଛ, ଆର୍ଜେଣ୍ଟିନାର ମେ'ମାସର ଉଜ୍ଜ୍ୱଳ ସୂର୍ଯ୍ୟ । ସେହିପରି ଭାରତର ଚରଖା ଚିହ୍ନ ବା ଗ୍ରୀନାଡାର ଜାଇଫଳ । ଭାରତ ପାଇଁ 'ଚରଖା' ଚିହ୍ନ ଜାତୀୟ ସ୍ୱାଭିମାନ ଓ ପ୍ରଗତିର ଏକ ବଳିଷ୍ଠ ପ୍ରତୀକ ।



ଆଉ କେତେକ ପ୍ରତୀକର ଜାତୀୟ ସଙ୍କେତ ଠାରୁ ଅଧିକ ବୃହତ୍ତର ଅର୍ଥ ରହିଛି । ଭାରତର ଚରଖା ଏହାର ଏକ ବଳିଷ୍ଠ ଉଦାହରଣ । ଆଉ କେତେକ ସଙ୍କେତର ଅର୍ଥ ଅଲଗାଧରଣର ହୋଇଥାଏ । ବିଭିନ୍ନ ଦେଶ ମଧ୍ୟରେ ଯଦି ରାଜନୀତି ବା ଧର୍ମ ସମ୍ପର୍କୀୟ ନୀତି ଓ ବିଚାରରେ ମେଳ ଥାଏ, ସେମାନେ ନିଜ ଭିତରେ ଭ୍ରାତୃତ୍ୱ ଓ ଦୃଢ଼ ସମ୍ପର୍କକୁ ସୂଚାଇବା ପାଇଁ ମଧ୍ୟ କେତେକ ପ୍ରତୀକ ବ୍ୟବହାର କରିଥାନ୍ତି । କମ୍ୟୁନିଷ୍ଟ୍ ରାଷ୍ଟ୍ରଗୁଡ଼ିକରେ ପାଞ୍ଚମୁଣ୍ଡିଆ ତାରା ଚିହ୍ନକୁ ବହୁଳ ଭାବରେ ବ୍ୟବହାର କରାଯାଇଥାଏ । ସେହିପରି ସମସ୍ତ ଇସ୍‌ଲାମିକ୍ ଦେଶରେ ଜାତୀୟ ପତାକାରେ ଖଣ୍ଡିଆ ଜହ୍ନର ଛବି ଦେଖିବାକୁ ମିଳିଥାଏ ।

## ପତାକାର ରଙ୍ଗ

ପତାକାଗୁଡ଼ିକରେ ଗାଢ଼ ରଙ୍ଗଗୁଡ଼ିକ ଖୁବ୍ ଆକର୍ଷଣୀୟ ମନେ ହୋଇଥାଏ । କିନ୍ତୁ ଏହି ରଙ୍ଗଗୁଡ଼ିକୁ କେବଳ ପତାକାର ଆକର୍ଷଣ ବଢ଼ାଇବା ପାଇଁ ଦିଆଯାଇ ନଥାଏ । ବିଭିନ୍ନ କାରଣକୁ ନେଇ ପତାକାର ରଙ୍ଗଗୁଡ଼ିକୁ ବଛାଯାଇଥାଏ । ଏହା ଐତିହାସିକ, ରାଜନୈତିକ ବା ସାଙ୍କେତିକ କାରଣକୁ ନେଇ ବଛାଯାଇପାରେ ।

ପ୍ରତ୍ୟେକ ଦେଶ ଏହାର ବିଭିନ୍ନ ଗତିବିଧି ଓ ସ୍ଥିତିକୁ ନେଇ ଗୋଟିଏ ରଙ୍ଗକୁ ଅଧିକ ଆଦର ବା ସମ୍ମାନ କରିଥାଏ । ଏଥିରୁ କେତେକ ରଙ୍ଗକୁ ଆମେ ବୁଝିବାକୁ ଚେଷ୍ଟା କରିବା । ସ୍ପେନ୍, ସ୍ୱିଡେନ୍, ସୁଇଜର୍‌ଲାଣ୍ଡ୍ ଆଦି ଦେଶରେ ପତାକାର ରଙ୍ଗଗୁଡ଼ିକୁ ସେମାନଙ୍କ ଅତୀତର ରାଜବଂଶ ଓ ଆଭିଜାତ୍ୟକୁ ଆଧାର କରି ବଛାଯାଇଛି । ଏଠାରେ କୌଣସି ସାଙ୍କେତିକ ରଙ୍ଗ ବଛା ଯାଇନାହିଁ । ସେହିପରି, ଫ୍ରାନ୍‌ସର ପତାକାରେ ଥିବା ନୀଳ, ଧଳା ଓ ଲାଲ୍ ରଙ୍ଗର କୌଣସି ଆଦର୍ଶଗତ ଗୁରୁତ୍ୱ ନାହିଁ । କିନ୍ତୁ ୧୭୮୯ ଫରାସୀ ବିପ୍ଳବ ସମୟରେ ଏହି ତିନି ରଙ୍ଗ ଫ୍ରାନ୍‌ସ୍ ଓ ପୃଥିବୀର ବିଭିନ୍ନ ଜାଗାରେ ଆଲୋଡ଼ନ ଆଣି ଦେଇଥିଲା । ଏହି ରଙ୍ଗଗୁଡ଼ିକୁ ପୃଥିବୀସାରା ଲୋକ 'ମୁକ୍ତିର ପ୍ରତୀକ' ରୂପେ ଦେଖିଥିଲେ । ଅନେକ ଦେଶ ଏହାଦ୍ୱାରା ଅନୁପ୍ରାଣିତ ହୋଇ ନିଜ ପତାକାରେ ଏହି ରଙ୍ଗଗୁଡ଼ିକୁ ସ୍ଥାନ ଦେଇଥିଲେ ।

ଏହାଛଡ଼ା ପତାକାରେ କେତେକ ରଙ୍ଗକୁ ମଣିଷ ସମାଜ ପାଇଁ ପ୍ରେରଣାଦାୟକ ରଙ୍ଗ ରୂପେ ବି ଦେଖାଯାଇଛି । ଲାଲ୍ ରଙ୍ଗକୁ କ୍ରାନ୍ତିକାରୀ ସମାଜବାଦର ରଙ୍ଗ ରୂପେ ଧରାଯାଇଛି । ସେହିପରି ଧଳାକୁ ଶାନ୍ତି ଓ ସବୁଜ ରଙ୍ଗକୁ ଇସଲାମ୍ ଧର୍ମର ସଙ୍କେତ ରୂପେ ବି ନିଆଯାଏ ।



(ଘାନାର ପତାକା)

ରଙ୍ଗଗୁଡ଼ିକ ଆଉ କେତେକ ଆନୁସଙ୍ଗିକ ଦିଗକୁ ମଧ୍ୟ ସୂଚାଇଥାନ୍ତି । ସବୁଜ ରଙ୍ଗ ଦେଶଟିର ଜଙ୍ଗଲ ଓ କୃଷି ସମ୍ପଦକୁ ସୂଚାଏ । ଗୋଟିଏ ଦେଶର ଶହୀଦ ଓ ଦେଶପ୍ରେମୀଙ୍କ ରକ୍ତକୁ ସୂଚାଇବା ପାଇଁ ଲାଲ୍ ରଙ୍ଗକୁ ବ୍ୟବହାର କରାଯାଇଥାଏ । ଏହା ଆଉ କେତେକ ଜାଗାରେ ରାଜନୈତିକ କାରଣରୁ

ଗୋଟିଏ ଦେଶ ଆଉ ଏକ ଦେଶର ପତାକା ରଙ୍ଗକୁ ବି ନିଜ ପତାକାରେ ବ୍ୟବହାର କରିଥାଏ । ୧୯୫୦ରୁ ୬୦ ଦଶକ ମଧ୍ୟରେ ସ୍ୱତନ୍ତ୍ର ହୋଇଥିବା ଅନେକ ଆଫ୍ରିକୀୟ ଦେଶ ଘାନାର ପତାକାର ଲାଲ୍, ହଳଦିଆ ଓ ସବୁଜ ରଙ୍ଗକୁ ନିଜ ପତାକାରେ ପୁନଃ ବ୍ୟବହାର କରିଥିଲେ । ଏହି ସମସ୍ତଙ୍କ ପାଇଁ ଏହି ରଙ୍ଗ ତିନୋଟି ମୁକ୍ତି ଓ ଏକତାର ପ୍ରତୀକ ଥିଲା ।

## ଆମ ସୁଖ ଦୁଃଖର ଚିରସାଥି

କାମ ଓ ପ୍ରଭାବ ଦିଗରୁ ଦେଖିଲେ ପତାକାଗୁଡ଼ିକ ସବୁବେଳେ ଲୋକଙ୍କ ମଧ୍ୟରେ ଏକତାର ଏକ ଭାବ ରୂପେ କାମ କରିଛନ୍ତି । ସମଗ୍ର ଦେଶରେ ହେଉ ବା କୌଣସି ସଂଗଠନରେ ହେଉ ସେମାନେ ସର୍ବଦା ଏକତାର ପ୍ରେରଣା ହିଁ ଯୋଗାଇଛନ୍ତି । ସେହିପରି ବିଭିନ୍ନ ଶାସକଙ୍କର ପତାକା ତାଙ୍କ ପ୍ରାଧାନ୍ୟ ଜାରି ରଖିବା ସାଙ୍ଗକୁ ଲୋକଙ୍କୁ ଏକଜୁଟ୍ କରାଇବାରେ ବଡ ଭୂମିକା ନେଇଛନ୍ତି ।



(ଇସ୍ରାଏଲର ପତାକା)



(ଅଷ୍ଟ୍ରେଲିଆର ପତାକା)

ଏହିପରି ବିଭିନ୍ନ ଦିଗରୁ ଦେଖିଲେ ପତାକାଗୁଡ଼ିକର ଭୂମିକା ବହୁମୁଖୀ । କୌଣସି ଖୁସିମୟ ଜାତୀୟ ଘଟଣା ସମୟରେ ସେମାନେ ଦେଶବାସୀଙ୍କୁ ଅଫୁରନ୍ତ ଆଶା ଓ ଆନନ୍ଦ ଯୋଗାଇ ପାରନ୍ତି । ଯୁଦ୍ଧ ସମୟରେ ସାରା ଦେଶବାସୀଙ୍କୁ ଦେଶ ପାଇଁ ଜାଗ୍ରତ କରାଇପାରନ୍ତି । ଦେଶର କୌଣସି ଉତ୍ସବ ସମୟରେ ଦେଶବାସୀ ଅତି ଖୋଲାଖୋଲି ଭାବରେ ମଉଜ କରିପାରନ୍ତି । ସେହିପରି କୌଣସି ଶେଷକୃତ୍ୟ ସମୟରେ ସାରା ଦେଶରେ ସେମାନେ ଶୋକର ଛାୟା ଖେଳାଇ ଦିଅନ୍ତି । ଏହି ସବୁ କାମ ପାଇଁ କୌଣସି ବିଶେଷ ଧରଣର ପତାକା ଲୋଡା ହୋଇ ନଥାଏ । ଆମ ପତାକା ଆମ ସବୁ ସୁଖ ଦୁଃଖର ମୂକ ଓ ଚିରସାଥି ରୂପେ କାମ କରିଥାଏ । କେବଳ କେତେକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ହିଁ ବିଶେଷ ଧରଣର ପତାକା ଲୋଡା ହୋଇଥାଏ ଓ କାମରେ ଲାଗିଥାଏ ।

***ଶାସକମାନଙ୍କ ପତାକା*** : ଜାତୀୟ ପତାକା ତିଆରିର ଆରମ୍ଭ ସମୟରେ ଶାସକମାନଙ୍କ ପ୍ରତୀକ ଥିବା ପତାକାସବୁ ହିଁ କାମରେ ଲାଗୁଥିଲା । ରାଜ୍ୟ ବା ଦେଶଟିର ଶାସକଙ୍କୁ ଏହାର ସବୁକିଛି ବୋଲି ଧରାଯାଉଥିଲା । ଏହି ଧାରାରେ ଶାସକ ଲୁଇସ୍ ଚତୁର୍ଦ୍ଦଶଙ୍କ ବିଖ୍ୟାତ ଘୋଷଣା ଥିଲା, 'ମୁଁ ହିଁ ଦେଶ' । ରାଜାମାନେ ନିଜକୁ ସ୍ୱର୍ଗର ପ୍ରତିନିଧି ଓ ସର୍ବୋତ୍ତମ ଯୋଗ୍ୟ ଲୋକ ବୋଲି ବିଚାର କରୁଥିଲେ । ମିଶରର ପୁରାତନ ରାଜା ଓସିରିସ୍ ନିଜକୁ ସୂର୍ଯ୍ୟଙ୍କ ପ୍ରତିନିଧି ବୋଲି ବିଚାରୁଥିଲେ । ସେହିପରି ଆମ ଦେଶରେ ବି ସୂର୍ଯ୍ୟବଂଶୀୟ, ଚନ୍ଦ୍ରବଂଶୀୟ ରାଜବଂଶଗୁଡ଼ିକ

ବିଷୟରେ ଆମେ ଜାଣିଛେ । ତେଣୁ ଏମାନଙ୍କ ପତାକାରେ ବି ସେମାନଙ୍କ ଏହି କର୍ତ୍ତୃତ୍ୱ ଜାରି ରହି ପାରୁଥିଲା ।

ଜାତୀୟ ପତାକା ତିଆରି ଆରମ୍ଭ ହେବା ସହିତ ଧୀରେ ଧୀରେ ରାଜାରାଜୁଡ଼ାଙ୍କ ଏପ୍ରକାରର ପ୍ରଭାବ କମି ଚାଲିଲା । ଦେଶର ଗତିବିଧି ଏକବ୍ୟକ୍ତି କୈନ୍ଦ୍ରିକ ପରମ୍ପରା ନ ହୋଇ ଲୋକଙ୍କର ବା ଦେଶର ବିଶେଷତ୍ୱକୁ ଅଧିକ ଗୁରୁତ୍ୱ ମିଳିଲା । କିନ୍ତୁ ପତାକାରେ ରାଜବଂଶଗଡ଼ିକର ପ୍ରଭାବ କମିବାକୁ ଯଥେଷ୍ଟ ସମୟ ଲାଗିଛି । ଗୋଟିଏ ସମୟରେ ରାଣୀ ଏଲିଜାବେଥ୍ଙ୍କ ପତାକା ଅନେକ ଦେଶରେ ଉଡୁଥିଲା । ବ୍ରିଟିଶ ରାଜ୍ୟଗୋଷ୍ଠୀ ଦେଶଗୁଡ଼ିକରେ ରାଣୀଙ୍କୁ ହିଁ ସଭ୍ୟ ଦେଶଗୁଡ଼ିକର ମୁଖ୍ୟ ବୋଲି ଧରାଯାଇଥାଏ । ଅଷ୍ଟ୍ରେଲିଆ, କାନାଡ଼ା, ଜାମାଇକା, ନିଉଜିଲାଣ୍ଡ୍ ଆଦି ଦେଶର ପତାକାରେ ରାଣୀଙ୍କର ବ୍ୟକ୍ତିଗତ ପତାକାର ଛାପ ରହିଥାଏ । ରାଣୀ ବି ଏ ସମସ୍ତ ଦେଶର ମୁଖ୍ୟା ଭାବରେ ନିଜର ନୀଳ ରଙ୍ଗର ବ୍ୟକ୍ତିଗତ ପତାକା ଉଡ଼ାଇଥାନ୍ତି ।

ସେହିପରି ବେଲ୍‌ଜିଅମ୍, ଡେନ୍‌ମାର୍କ ଓ ସ୍ୱିଡେନ୍‌ର ପତାକାରେ ସେମାନଙ୍କ ସମ୍ରାଟଙ୍କ ପ୍ରତୀକ ରହିଥାଏ । ଏହା ସେମାନଙ୍କ ପତାକାର କେନ୍ଦ୍ର ଭାଗରେ ରହିଥାଏ ।ଏସବୁକୁ ସେହି ଦେଶର ରାଜକୀୟ ପତାକା ବୋଲି ଧରାଯାଇଥାଏ । ନେପାଳ, ଥାଇଲାଣ୍ଡ, ହଲାଣ୍ଡ୍, ନରୱେ, ଇରାନ୍ ଆଦି ଦେଶରେ ବି ରାଜକୀୟ ପତାକା ଦେଖିବାକୁ ମିଳେ ଓ ଏଗୁଡ଼ିକରେ ରାଜାଙ୍କର ପ୍ରତୀକକୁ ଛପାଯାଇଥାଏ । ଜାପାନର ଶାସକଙ୍କ ପତାକାରେ ଶାସକଙ୍କ ପ୍ରତୀକ ଫୁଲଟି ଛପାଯାଇଥାଏ ।

ସାଧାରଣତନ୍ତ୍ର ବ୍ୟବସ୍ଥା ଥିବା ଦେଶରେ ନେତାମାନେ କେତେକ ସ୍ୱତନ୍ତ୍ର ଧରଣର ପତାକା ବ୍ୟବହାର କରିଥାଆନ୍ତି । ଅବଶ୍ୟ ଏଠାରେ ରାଜ୍ୟ ବା ଦେଶର ମୁଖ୍ୟଙ୍କ ପାଇଁ ପତାକାଟି ତିଆରି ହୋଇଥାଏ । କୌଣସି ବ୍ୟକ୍ତି ବିଶେଷଙ୍କ ନାମରେ ଏହାକୁ କରାଯାଇ ନଥାଏ । କେତେକ କ୍ଷେତ୍ରରେ ଏଥିରେ ଆଂଶିକ ବ୍ୟତିକ୍ରମ ରହିଥାଏ । ଫ୍ରାନ୍‌ସର ତ୍ରିରଙ୍ଗା ପତାକାର ମଝି ଭାଗରେ ଫରାସୀ ରାଷ୍ଟ୍ରପତିଙ୍କ ଦସ୍ତଖତ ରହିଥାଏ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଏଠାରେ ଜେନେରାଲ୍ ଚାର୍ଲସ୍ ଡି ଗଲେ ଦେଶର ରାଷ୍ଟ୍ରପତି ଥିବାବେଳେ ରାଷ୍ଟ୍ରପତିଙ୍କ ଦସ୍ତଖତ ତଳେ ଆଉ ଏକ ସଙ୍କେତ ବି ରଖାଯାଉଥିଲା । ଏହା ମୁକ୍ତ ଫରାସୀ ସେନାବାହିନୀର ସଙ୍କେତ ରୂପେ କାମ କରୁଥିଲା । ଏହାପରେ ଫରାସୀ ପତାକାରେ ଆଉ କେତେକ ଆଂଶିକ ପରିବର୍ତ୍ତନ କରାଯାଇଥିଲା । କିନ୍ତୁ ଏବେ ଫରାସୀ ରାଷ୍ଟ୍ରପତି ସେହି ତ୍ରିରଙ୍ଗା ହିଁ ବ୍ୟବହାର କରୁଛନ୍ତି । କେବଳ ଏହାର ମଝି ଭାଗରେ ଗୋଟିଏ ଓକ୍ ଓ ଅଲିଭ୍ ଗଛର ସଙ୍କେତ ରହୁଛି । ଏହା ଫ୍ରାନ୍‌ସ୍‌ର ଏକତାକୁ ସୂଚାଉଛି । କେତେକ ଦେଶରେ ମୁଖ୍ୟ ଓ ବିଭିନ୍ନ ବିଭାଗର ମନ୍ତ୍ରୀମାନେ ସ୍ୱତନ୍ତ୍ର ଧରଣର ପତାକା ବ୍ୟବହାର କରିଥାନ୍ତି ।



(ଜାମ୍ବିଆ ରାଷ୍ଟ୍ରପତିଙ୍କ ପତାକା ଚିହ୍ନ)

*ସାମରିକ ପତାକା* : ଆଗ କାଳରେ ଯୁଦ୍ଧ କ୍ଷେତ୍ରରେ ସୈନ୍ୟମାନଙ୍କୁ ଏକାଠି ଗୋଟିଏ ଜାଗାରେ ରଖିବା ପାଇଁ ପତାକା ବ୍ୟବହାର କରାଯାଉଥିଲା । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ଭୂଖଣ୍ଡରେ ଏହି ପରମ୍ପରା ଜାରିଥିଲା । ଭାରତର ବିଭିନ୍ନ ଗ୍ରନ୍ଥ ଓ ପୁରାଣରେ ଆମେ ପଢିବାକୁ ପାଉଛେ କିପରି ବିଭିନ୍ନ ସେନାସବୁ ସ୍ୱତନ୍ତ୍ର ପତାକା ତଳେ ଏକାଠି ରହି ଯୁଦ୍ଧ କରୁଥିଲେ । ପୁରାତନ ଚୀନ୍‌ରେ ବି ସୈନ୍ୟଦଳଗୁଡିକ ଅଲଗା ଅଲଗା ରଙ୍ଗର ପତାକା ଧରି ଛୋଟ ଛୋଟ ଦଳରେ ଯୁଦ୍ଧ ଚଳାଉଥିଲେ । ୟୁରୋପରେ ପ୍ରତ୍ୟେକ ରୋମାନ୍ ଦଳ ନିଜର ସ୍ୱତନ୍ତ୍ର ଛଣ୍ଢାଣ ପ୍ରତୀକ ଥିବା ପତାକା ବ୍ୟବହାର କରୁଥିଲେ ।



ମଧ୍ୟ ଯୁଗରେ ସୈନ୍ୟମାନେ ମୁଖା ପିନ୍ଧିବାକୁ ଆରମ୍ଭ କଲେ । ସେମାନଙ୍କ ମୁହଁ ଓ ମୁଣ୍ଡ ଜମା ଦେଖାଯାଉ ନଥିଲା । ସେମାନଙ୍କ ପରିଚିତି ପାଇଁ ସେମାନେ ନିଜ ବାହୁ, ଟୋପି, ଢାଲ ଓ ପତାକାରେ ନିଜ ଦଳର ଓ ବ୍ୟକ୍ତିଗତ ପ୍ରତୀକ ରଖୁଥିଲେ ।



ରାଜକୀୟ ଶାସନର ବିକାଶ ସହିତ ପତାକାଗୁଡିକ ଅଧିକରୁ ଅଧିକ ଆଡମ୍ବରମୟ ହେବାରେ ଲାଗିଲା । ଏହାକୁ ଶାସକ, ଯୋଦ୍ଧା, ବିଶେଷବ୍ୟକ୍ତି, ସୈନ୍ୟଦଳ ଆଦି ସମସ୍ତେ ବ୍ୟବହାର କରୁଥିଲେ । ଏହା ସହିତ ଯୁଦ୍ଧ କ୍ଷେତ୍ରକୁ ସେହି ଦେଶର ସାଧୁମାନଙ୍କ ଛବି ଥିବା ପତାକାସବୁ ବି ନିଆଯାଉଥିଲା । ଖ୍ରୀଷ୍ଟଧର୍ମୀ ଦେଶର ଯୋଦ୍ଧାମାନେ ତ ସବୁଆଡେ ଉଣାଅଧିକେ ସେଣ୍ଟ୍ ଜର୍ଜ୍‌ଙ୍କର 'କ୍ରୁଶ' ଚିହ୍ନକୁ ବ୍ୟବହାର କରୁଥିଲେ । କ୍ରମଶଃ ଖ୍ରୀଷ୍ଟଧର୍ମରେ ବିଭାଜନ ସାଙ୍ଗକୁ ପ୍ରୋଟେଷ୍ଟାଣ୍ଟ୍ ଓ କ୍ୟାଥୋଲିକ୍ ସମ୍ପ୍ରଦାୟର ସେନାମାନେ ଅଲଗା ପ୍ରକାରର ପତାକା ବ୍ୟବହାର କରିବାକୁ ଆରମ୍ଭ କଲେ ।

ଏହାପର ଶତାବ୍ଦୀରେ ପତାକାଗୁଡିକ ଅଧିକରୁ ଅଧିକ ଅଳଙ୍କୃତ ହେବାରେ ଲାଗିଲା । ସବୁବେଳେ ପ୍ରତ୍ୟେକ ପତାକା ମଧ୍ୟରେ କିଛି ନା କିଛି ଫରକ ରହୁଥିଲା । ଇଂରେଜ ଲୋକମାନେ ତାଙ୍କ ପତାକାରେ ସେଣ୍ଟ୍ ଜର୍ଜ୍‌ଙ୍କ କ୍ରୁଶ୍ ଚିହ୍ନକୁ ମଝିରେ ରଖିଲେ । କିନ୍ତୁ ଫ୍ରାନ୍ସରେ ତାଙ୍କର ସାଥିମାନେ ତାଙ୍କ ପତାକାର କେନ୍ଦ୍ରଭାଗରେ ଗୋଟିଏ ଧଳା କ୍ରୁଶ୍ ଚିହ୍ନକୁ ରଖିଲେ । କ୍ରମଶଃ ଛୋଟ ଛୋଟ ସେନାଗୁଡିକର ସଂଖ୍ୟା ବଢିବାରେ ଲାଗିଲା । ସେମାନେ

ନିଜ ବିଜୟ ଓ ସଫଳତାକୁ ସୂଚାଇ ରଖିବା ପାଇଁ ସ୍ମରଣିକା ପତାକା ସବୁ ବି ବନାଇଲେ । ଏଥିରେ ସେମାନେ ଯଥେଷ୍ଟ ବେଶୀ ଖର୍ଚ୍ଚ କରି ଦାମୀ ଧାତୁ ବ୍ୟବହାର କଲେ ଓ ଏଥିରେ ବିଭିନ୍ନ ମୂଲ୍ୟବାନ ପଦକ, ଫଳକ ଆଦିକୁ ବି ଯୋଡିଲେ । ଏହା ତାଙ୍କ ପାଇଁ ଗର୍ବର ବିଷୟ ଥିଲା ।

କେତେକ ଦେଶରେ ମୁଖ୍ୟମାନେ ତାଙ୍କର ସାମରିକ ବିଭାଗକୁ ପୁରସ୍କାର ସ୍ୱରୂପ ସ୍ୱତନ୍ତ୍ର ପତାକାମାନ ଉପହାର ଦେଉଥିଲେ । ଏହାକୁ ରାଜା, ରାଣୀ ବା ରାଷ୍ଟ୍ରପତିଙ୍କ ପତାକା ରୂପେ ସର୍ବୋଚ୍ଚ ସମ୍ମାନ ଦିଆଯାଉଥିଲା । ଏହା ବି ଶାସକମାନଙ୍କ ବଡିମା ଦେଖାଇବାର ଏକ ବାଟଥିଲା । କ୍ରମଶଃ ଏହା ଏକ ପରମ୍ପରା ବନିଯାଇଥିଲା । ଆଜିକାଲି ରାଜତ୍ୱ କମିବା ସାଙ୍ଗକୁ ଏହି ପରମ୍ପରା ଅନେକାଂଶରେ କମିଯାଇଛି । କିନ୍ତୁ ଏହା ପୂରାପୂରି ବନ୍ଦ ହୋଇନାହିଁ । ଏବେ ବି ବ୍ରିଟିଶ୍ ରାଜତ୍ୱରେ ପତାକା ପ୍ରଦାନ ଉତ୍ସବ ପାଳନ କରାଯାଏ । ବିଭିନ୍ନ ସେନାଦଳଙ୍କ ସାମନାରେ ବିଭିନ୍ନ ସାମରିକ ପତାକାକୁ ପ୍ରଦର୍ଶନ କରି କ୍ରମରେ ନିଆଯାଏ, ଯେପରି ସେମାନେ ଏହାକୁ ଚିହ୍ନି ପାରିବେ ଓ ମନେ ରଖି ପାରିବେ । ଏଠାରେ ଆମେ କେତେକ ଜଣାଶୁଣା ସାମରିକ ପତାକାର ଛବି ଦେଖିବାକୁ ପାଉଛେ ।

***ସମୁଦ୍ରରେ ପତାକା :*** ପ୍ରାଚୀନ କାଳରୁ ସମୁଦ୍ରରେ ଆତଯାତ କରୁଥିବା ଜାହାଜଗୁଡିକରେ ପତାକା ଲାଗିବାର ପରମ୍ପରା ଜାରି ଅଛି । ଆଜିକୁ ୪୦୦୦ ବର୍ଷ ତଳେ ବି ଜାହାଜର ଅଗରେ ଝାଲର ଆଦି ସହିତ ମାଛ ଆକାରର ପତାକା ଉଡିଥିବାର ଜଣାଅଛି । ଭାରତୀୟ ସଭ୍ୟତାରେ ବି ପ୍ରାଚୀନ କାଳରେ ଲୋକେ ବୋଇତ ଆଦିରେ ଧାର୍ମିକ ପତାକା ଉଡାଇ ବିଭିନ୍ନ ଜାଗାକୁ ଜଳଯାତ୍ରା କରିଥିବାର ଲେଖାଅଛି ।

ମଧ୍ୟଯୁଗ ବେଳକୁ ବଡ ଆକାରର ପତାକା ସବୁ ଜାହାଜ ଉପରେ ଉଡାଯାଉଥିଲା । ଏହା ମୂଳତଃ ସେହି ଦେଶର ରାଜା ଓ ମୁଖ୍ୟ ନାବିକଙ୍କୁ ହିଁ ସୂଚାଉଥିଲା । ବେପାର ଜାହାଜଗୁଡିକ ଉପରେ ବ୍ୟବସାୟୀ ବା ଆନୁସଙ୍ଗିକ ବନ୍ଦରର ପ୍ରତୀକ ପତାକାଟି ଜାହାଜର ମାସ୍ତୁଲରେ ଲାଗୁଥଲା । କ୍ରମଶଃ ଯୁଦ୍ଧ ଜାହାଜ ଓ ବେପାର ଜାହାଜ ମଧ୍ୟରେ ଫରକ ଅଧିକ ସ୍ପଷ୍ଟ ହୋଇ ଚାଲିଲା ଓ ସ୍ୱତନ୍ତ୍ର ଧରଣର ପତାକାମାନ ଦେଖିବାକୁ ମିଳିଲା । ଆଜି ବି ଏହି ଦୁଇ କ୍ଷେତ୍ରରେ ପତାକାଗୁଡିକ ସ୍ୱତନ୍ତ୍ର ଧରଣର ହୋଇଥିବାର ଦେଖିବାକୁ ମିଳୁଛି ।



୧୬ଶ ଶତାବ୍ଦୀ ବେଳକୁ ଜାହାଜ ସବୁ ଆହୁରି ଦୂର ଦୂରାନ୍ତକୁ ଆତଯାତ କଲେ । ସେଥିପାଇଁ ସେମାନଙ୍କ ଦେଶ, ଶାସକ ଓ ନାବିକମାନଙ୍କର ଗୁରୁତ୍ୱ ଆହୁରି ବଢିପାରିଲା । ଏଥର ଜାହାଜର ଆଗପଟେ ଯାତ୍ରା ସମ୍ପର୍କୀୟ ପତାକା ଓ ପଛ ଭାଗରେ ଦେଶର ଜାତୀୟ ପତାକା ଉଡିଲା । ଏହା ସାଙ୍ଗକୁ ବେପାରି ଜାହାଜଗୁଡିକ ଜାହାଜ ମାଲିକଙ୍କ ପତାକାକୁ ବି ଉଡାଇଲେ । ଯୁଦ୍ଧ ଜାହାଜଗୁଡିକରେ ବିଶେଷ ଧରଣର ବିରାଟ ଆକାରର ଲମ୍ବାଲାଞ୍ଜିଆ ପତାକାମାନ ଉଡିଲା । ଆଜିକାଲି ଉଚ୍ଚ ପଦବିଶିଷ୍ଟ ଅଫିସର୍‌ମାନଙ୍କ ପତାକାକୁ ବି ଜାହାଜରେ ଲଗାଯାଉଛି ।



(ଜାପାନ ନୌବାହିନୀ ପତାକା)



(ଇସ୍ରାଏଲ ବାଣିଜ୍ୟ ପତାକା)

ଆଜିକାଲି ବିଭିନ୍ନ ଦେଶର ଜାହାଜରେ ଲାଗୁଥିବା ପତାକାଗୁଡିକରେ ବେଶ ଫରକ ଲକ୍ଷ୍ୟ କରିହୁଏ । ଅଧିକାଂଶ ଦେଶ ନିଜର ଜାତୀୟ ପତାକାକୁ ହିଁ ଉଭୟ ବାଣିଜ୍ୟ ଓ ସମର ଜାହାଜରେ ଉଡାଇଥାନ୍ତି । କିନ୍ତୁ କିଛି ଦେଶ ତାଙ୍କର ସ୍ୱତନ୍ତ୍ର ପତାକା ବ୍ୟବହାର କରୁଛନ୍ତି । ଅନେକ ଦେଶର ସାମରିକ ଜାହାଜରେ ପତାକାର ରଙ୍ଗ ଅଲଗା । କିନ୍ତୁ ଇସ୍ରାଏଲ୍‌ରେ ବାଣିଜ୍ୟ ପତାକାଟି ହିଁ ଅଲଗା ଧରଣର ହୋଇଥାଏ । ଯୁକ୍ତରାଜ୍ୟ ଆଦି କେତେକ ଦେଶରେ ଜାତୀୟ ପତାକା, ସମର ଜାହାଜ ପତାକା ଓ ବାଣିଜ୍ୟ ଜାହାଜ ପତାକା ସବୁତକ ଅଲଗା ଅଲଗା ପ୍ରକାରର ହୋଇଥାଏ ।

***ଧର୍ମ ସମ୍ପର୍କୀୟ ପତାକା*** : ଭାରତ ପରି ଏକ ବହୁଧର୍ମ ବିଶିଷ୍ଟ ଦେଶରେ ବିଭିନ୍ନ ଧର୍ମର ଲୋକ ବାସ କରନ୍ତି । ଏଠାରେ ଜାତୀୟ ପତାକାରେ ଧର୍ମ ପ୍ରତି ନିରପେକ୍ଷତା ବଜାୟ ରଖାଯାଇଛି । କିନ୍ତୁ ବିଭିନ୍ନ ଧର୍ମ ତାଙ୍କର ବିଭିନ୍ନ କାମ ପାଇଁ ବିବିଧ ପତାକା ବ୍ୟବହାର କରୁଛନ୍ତି ।

ପ୍ରାଚୀନ କାଳରେ ସୈନ୍ୟମାନେ ଯୁଦ୍ଧକ୍ଷେତ୍ରକୁ ଯିବା ସମୟରେ ତାଙ୍କ ଧର୍ମର ପତାକା ଧରି ଯାଉଥିଲେ । ଏହାକୁ ଦେଶର ଏକ ପବିତ୍ର ପ୍ରତୀକ ରୂପେ ଧରାଯାଉଥିଲା । ତାଙ୍କର ଦେବ ଦେବୀଙ୍କର ଆଶୀର୍ବାଦ ସହ ସେମାନେ ଯୁଦ୍ଧକୁ ଯାଉଛନ୍ତି ଭାବି ସମାନେ ମନବଳ ପାଉଥିଲେ । ପୁରାତନ ଗ୍ରୀସ୍, ରୋମ୍ ଓ ମିଶରର ଯୋଦ୍ଧାମାନେ ବିଚାରୁଥିଲେ, ପତାକାରୁ ବିଚ୍ଛୁରିତ ହେଉଥିବା ଦୈବଶକ୍ତିରେ ସେମାନେ ବଳିଷ୍ଠ ହେଉଛନ୍ତି । ଯୁଦ୍ଧରେ ହାରିଗଲେ ସେମାନେ ଏହାକୁ ଦେବ ଦେବୀଙ୍କର ଏକ ଅଭିଶାପ ବୋଲି ଧରି ନେଉଥିଲେ । ଆମର ପ୍ରାଚୀନ ପତାକାରେ ଥିବା ଧାର୍ମିକ ଚିତ୍ର ଓ ଲୋକଙ୍କର ବିଶ୍ୱାସ ମଧ୍ୟରେ ଏକ ନିବିଡ ସମ୍ପର୍କ ରହିଥିଲା ।

ଖ୍ରୀଷ୍ଟଧର୍ମୀମାନଙ୍କର ମଧ୍ୟ ଏ ପ୍ରକାରର ଏକ ଗଭୀର ବିଶ୍ୱାସ ରହିଥିଲା । ମଧ୍ୟ ଯୁଗରେ ୟୁରୋପରେ ସେମାନେ ବିଶ୍ୱାସ କରୁଥିଲେ ଯେ ତାଙ୍କ ପତାକାରେ ଅଙ୍କିତ ସାଧୁମାନେ ତାଙ୍କୁ ଯୁଦ୍ଧବେଳେ ବିପଦରୁ ରକ୍ଷା କରିବେ । ଏହି ବିଶ୍ୱାସରେ ପାଶ୍ଚାତ୍ୟ ଦୁନିଆରେ ଯେତେ ପ୍ରକାରେ ସମ୍ଭବ, ବିବିଧ ରକମର ଧାର୍ମିକ ଚିହ୍ନଥିବା ପତାକାମାନ ମୁଣ୍ଡ ଟେକିଥିଲା । ଏଗୁଡିକ ମଧ୍ୟରେ ସବୁଠୁ ଜଣାଶୁଣା ଥିଲା ଖ୍ରୀଷ୍ଟ ଧର୍ମର 'କ୍ରୁଶ୍' ଚିହ୍ନ । ଏହାପରି କ୍ୟାଥାଲିକ୍‌ଧର୍ମୀ ଦେଶଗୁଡିକରେ ମା' ମେରୀଙ୍କର ପ୍ରତିକୃତିକୁ ପତାକାରେ ବହୁଳ ଭାବେ ବ୍ୟବହାର କରାଯାଇଥିଲା । ସେହିପରି ମେକ୍ସିକୋର ଇତିହାସରେ ଗ୍ୱାଡାଲୁପଙ୍କ କୁମାରୀ କନ୍ୟାଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିବାର ଦେଖିବାକୁ ମିଳେ ।



ପୃଥିବୀର ସବୁ ଜାଗାରେ ଅନ୍ୟ ଧର୍ମବଲମ୍ବୀମାନେ ନିଜ ନିଜର ପତାକା ବନାଇଥିଲେ । ଉଦାହରଣସ୍ୱରୂପ, ଇସ୍‌ଲାମ୍ ଧର୍ମରେ ପତାକା ସବୁ ବେଶ୍ ଅଧିକ ଅଳଙ୍କୃତ ଓ ଆକର୍ଷଣୀୟ ବନାଯାଇଥିଲା । ଏଥିରେ ଥିବା ଖଣ୍ଡିଆ ଜହ୍ନ ସବୁ ଇସ୍‌ଲାମିକ୍ ଦେଶର ପତାକାରେ ବ୍ୟବହୃତ ହୋଇଥିଲା ।

ହିନ୍ଦୁ ଧର୍ମରେ ମଧ୍ୟ ପ୍ରତ୍ୟେକ ଧର୍ମର ସ୍ୱତନ୍ତ୍ର ପତାକାମାନ ଦେଖିବାକୁ ମିଳ । ହିନ୍ଦୁ ଧର୍ମର ଆଉ ଏକ ବିଶେଷତ୍ୱ ହେଉଛି : ଅସଂଖ୍ୟ ଦେବ ଦେବୀରେ ବିଶ୍ୱାସ । ତେଣୁ ଏହି ବିଶ୍ୱାସ ସବୁକୁ ଆଧାର କରି ଅନେକ ସଙ୍କେତ ରହିଛି । ଏହି ସଙ୍କେତ ସବୁକୁ ବ୍ୟବହାର କରି ବିଭିନ୍ନ ରକମର ପତାକା ବି ଦେଖିବାକୁ ମିଳିଥାଏ ।

***ରାଜନୈତିକ ପତାକା*** : ପ୍ରକୃତରେ ଦେଖିବାକୁ ଗଲେ, ସବୁ ଜାତୀୟ ପତାକାକୁ ରାଜନୈତିକ ବୋଲି କୁହାଯାଇପାରେ । କାରଣ ସେମାନେ ଦେଶର ଆଦର୍ଶ ଓ ଜୀବନଧାରାକୁ ଏକ ପ୍ରତୀକ ରୂପେ ସୂଚାଇଥାନ୍ତି । କିନ୍ତୁ ଦେଶ ଭିତରେ ମଧ୍ୟ ସମାଜର ଆବଶ୍ୟକତା ଓ ଏସବୁର ପରିପୂରଣ ସମ୍ପର୍କରେ ଅନେକ ଲୋକ ଓ ଅନୁଷ୍ଠାନଙ୍କର ଅଲଗା ମତ ରହିଥାଏ । ଅସଲ ଗଣତାନ୍ତ୍ରିକ ଦେଶରେ ବିଭିନ୍ନ ବିଚାରରେ ବିଶ୍ୱାସ ରଖିଥିବା ରାଜନୈତିକ ଦଳସବୁ ରହିଥାନ୍ତି । ସେମାନେ ନିଜ ଦର୍ଶନକୁ ଆଧାର କରି ପରସ୍ପର ମଧ୍ୟରେ ତର୍କ କରନ୍ତି । ନିଜ ଦଳର ପ୍ରତୀକ ରୂପେ ସେମାନେ ସମସ୍ତେ ସ୍ୱତନ୍ତ୍ର ପତାକା ବ୍ୟବହାର କରିଥାନ୍ତି । ଏହାକୁ ପ୍ରତୀକ ଧରି ସେମାନେ ଲୋକଙ୍କର ସମର୍ଥନ ଲୋଡିଥାନ୍ତି ।

ରାଜନୈତିକ ପତାକା ବିଭିନ୍ନ ପ୍ରକାରର ହୋଇଥାଏ । କେତେକରେ କେବଳ ରଙ୍ଗପଟି ଥାଏ । କିନ୍ତୁ କେତେକ ପତାକା ନିଜ ଦେଶର ଜାତୀୟ ପତାକା ଠାରୁ ଅଲଗା ହୋଇଥାଏ । ଭାରତର



ବିଭିନ୍ନ ରାଜନୈତିକ ଦଳର ପତାକା ଓ ପ୍ରତୀକ ସମ୍ପର୍କରେ ଆମେ ଜାଣିଅଛେ । ତେଣୁ ଏଠାରେ ସେ ସବୁ ବିଷୟରେ ଅଧିକା ଜାଗା ନେବା ନାହିଁ । କିନ୍ତୁ ଆଗର ଜାତୀୟ କଂଗ୍ରେସ ଦଳ ପତାକାଟିକୁ ଦେଖିବା । ସେତେବେଳେ ଏହା ଜାତୀୟ ପତାକା ପରି ଥିଲା । କିନ୍ତୁ ଏହାର ମଝି ଭାଗରେ ଆଶୋକ ଚକ୍ର ଚିହ୍ନ ବଦଳରେ 'ଚରଖା'ର ଚିହ୍ନ ରହିଥିଲା । ଚରଖା ଗାନ୍ଧିଜୀଙ୍କ ଦ୍ୱାରା ବହୁଳ ଭାବେ ପ୍ରସାରିତ କରାଯାଇଥିଲା । ଏହା ଥିଲା ଗାନ୍ଧିଜୀଙ୍କ ମତରେ - 'ଭାରତର ଭାଗ୍ୟ ବିଧାତା - ପ୍ରଗତିର ପ୍ରତୀକ ।' କିନ୍ତୁ କାଳକ୍ରମେ ପତାକାର ଏହି ଗୁରୁତ୍ୱପୂର୍ଣ୍ଣ ପ୍ରତୀକଟିକୁ ବଦଳାଇ ଦିଆଯାଇଥିଲା ।

ଅନେକ ରାଜନୈତିକ ଦଳର ପତାକା ସମ୍ପୂର୍ଣ୍ଣ ରୂପେ ନୂଆ ଧରଣର ହୋଇଥାଏ । ଏଠାରେ ଆମେ ଉଦାହରଣ ରୂପେ ଫିନ୍‌ଲାଣ୍ଡର ଜାତୀୟ ଦଳର ବର୍ଗାକାର ପତାକାଟିକୁ ଦେଖୁଛେ । କମ୍ୟୁନିଷ୍ଟ ଦେଶର ପତାକାଗୁଡିକ ଏ ଦିଗରୁ ଅଧିକ ଆନ୍ତର୍ଜାତୀୟ ଭାବଧାରାର ସୂଚନା ଦେଇଥାନ୍ତି । ପୃଥିବୀର ବିଭିନ୍ନ ଜାଗାର କମ୍ୟୁନିଷ୍ଟ ଦେଶ ତାଙ୍କ ପାରମ୍ପରିକ ଲାଲ୍ ପତାକାରେ ପାଞ୍ଚମୁଣ୍ଡିଆ ତାରା ଓ ବିଭିନ୍ନ ଶ୍ରମିକଙ୍କର ହତିଆର, ଯଥା : ହାତୁଡି, ଦାଆ ଓ ଲଙ୍ଗଳ ପ୍ରତୀକ ରଖିଥାନ୍ତି ।

ଅନେକ କ୍ଷେତ୍ରରେ ରାଜନୈତିକ ପତାକାଗୁଡିକ ବି ଜାତୀୟ ପତାକାର ରୂପକୁ ପ୍ରଭାବିତ କରିଥାଆନ୍ତି । ନୂଆରେ ସ୍ୱାଧୀନତା ହାସଲ କରିଥିବା ଅନେକ ଆଫ୍ରିକୀୟ ଦେଶ ନିଜ ରାଜନୈତିକ ପତାକାକୁ ଭିତ୍ତି କରି ଜାତୀୟ ପତାକାର ରୂପ ଆଙ୍କିଛନ୍ତି ।

## ବିଭିନ୍ନ ସଙ୍ଗଠନର ପତାକା

ଦେଶରେ ଜାତୀୟ ସଂହତି ବଜାୟ ରଖିବା ଓ ଦୃଢୀଭୂତ କରିବା ପାଇଁ ଦେଶ ଜାତୀୟ ପତାକା ବ୍ୟବହାର କରିଥାଏ । ସେହିପରି ବିଭିନ୍ନ ଲୋକ ସଙ୍ଗଠନ ନିଜ ଏକତା ଓ ଶକ୍ତି ପ୍ରଦର୍ଶନ କରିବା ପାଇଁ ପତାକା ବ୍ୟବହାର କରିଥାଆନ୍ତି । ପୃଥିବୀର ବିଭିନ୍ନ ସାମାଜିକ ଓ କୀଡା ସଙ୍ଗଠନ, ପେଷାଦାର ସଙ୍ଗଠନ, ବାଣିଜ୍ୟ କମ୍ପାନୀ ଓ ଅନ୍ୟପ୍ରକାରର ଅନୁଷ୍ଠାନ ନିଜ କାର୍ଯ୍ୟାଳୟ ଉପରେ ନିଜର ସ୍ୱତନ୍ତ୍ର ପତାକା ପ୍ରଦର୍ଶନ କରିଥାଆନ୍ତି । ବିଭିନ୍ନ ଶ୍ରମିକ ସଙ୍ଗଠନ (ଟ୍ରେଡ ୟୁନିଅନ୍) ବି ନିଜର ଭ୍ରାତୃତ୍ୱକୁ



(ବିଶ୍ୱ ସ୍କାଉଟ ସଂଗଠନ)

ବଳବତ୍ତର କରିବା ପାଇଁ ପତାକା ବ୍ୟବହାର କରନ୍ତି । ସ୍କାଉଟ୍ ଅନୁଷ୍ଠାନର ପତାକା ବି ଏପରି ଏକ ଉଦାହରଣ ।

## କେତେକ ଆନ୍ତର୍ଜାତିକ ପତାକା

ଆଜି ପୃଥିବୀରେ ଆମେ ଏପ୍ରକାରର ବିଭିନ୍ନ ପତାକା ଦେଖିବାକୁ ପାଇଥାନ୍ତି । ଆନ୍ତର୍ଜାତୀୟ ସ୍ତରରେ ବିଭିନ୍ନ ବିଶ୍ୱକଲ୍ୟାଣକାରୀ କାମ କରୁଥିବା କେତେକ ଆନ୍ତର୍ଜାତୀୟ ସଙ୍ଗଠନ ଏହି ଶ୍ରେଣୀରେ ଅନ୍ତର୍ଭୁକ୍ତ । ଏହା ମଧ୍ୟରେ ସବୁଠୁ ବିଖ୍ୟାତ ହେଉଛି ମିଳିତ ଜାତିସଂଘ ଓ ଏହାର ନୀଳ ରଙ୍ଗର ପତାକା । ଏହାର ମଝି ଭାଗରେ ଏହାର ଧଳା ରଙ୍ଗର ପ୍ରତୀକଟି ରହିଛି, ଯେଉଁଥିରେ ଗୋଟିଏ ଗ୍ଲୋବ୍ ରହିଛି । ଏହା ଅନୁଷ୍ଠାନଟିର ଆନ୍ତର୍ଜାତୀୟ ସ୍ଥିତିକୁ ସୂଚାଉଛି । ଏହାର ଉଭୟ ପଟରେ ଦୁଇଟି ଅଲିଭ୍ ଗଛର ଡାଳ ରହିଛି । ଏହି ଡାଳ ଦୁଇଟି ଜାତିସଂଘର ଲକ୍ଷ୍ୟକୁ ସୂଚାଉଛି : ବିଶ୍ୱରେ ଶାନ୍ତି ପ୍ରତିଷ୍ଠା କରିବା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସରିବା ପରେ ଜାତିସଂଘ ପ୍ରତିଷ୍ଠିତ ହୋଇଥିଲା । ପରେ ପରେ ୧୯୪୭ ମସିହାରେ ଜାତିସଂଘ ଏହି ପତାକାଟିକୁ ଗ୍ରହଣ କରିଥିଲା ।



ଏପରି ଆଉ ଏକ ଜଣାଶୁଣା ପତାକା ହେଉଛି - ଅଲିମ୍ପିକ୍ ପତାକା । ୧୯୨୦ ମସିହା ଠାରୁ ଏହି ପତାକାଟିକୁ ବିଭିନ୍ନ ଅଲିମ୍ପକ କ୍ରୀଡାରେ ଉଡାଯାଉଅଛି । ପ୍ରଥମେ ଏହାକୁ ଆଣ୍ଟ୍ୱେର୍ପ୍ ଅଲିମ୍ପିକ୍ କ୍ରୀଡାରେ ଉଡା ଯାଇଥିଲା । ଏଥିରେ ନୀଳ, ହଳଦିଆ, କଳା, ସବୁଜ ଓ ଲାଲ୍ ରଙ୍ଗର ପାଞ୍ଚଟି ଗୋଲ ପରସ୍ପର ସହ ଛନ୍ଦି ହୋଇ ରହିଥାନ୍ତି । ଏହି ପାଞ୍ଚଟି ଗୋଲ ପାଞ୍ଚ ମହାଦେଶ ଓ ଏମାନଙ୍କ ମଧ୍ୟରେ ବନ୍ଧୁତ୍ୱକୁ ସୂଚାଇଥାନ୍ତି । ଏଗୁଡିକୁ ୧୯୦୬ ମସିହାଠାରୁ ଅଲିମ୍ପିକ୍ କ୍ରୀଡାର ପ୍ରତୀକ ରୂପେ ବ୍ୟବହାର କରାଯାଉଛି । ମିଳିତ ଜାତିସଂଘ ଓ ଅଲିମ୍ପକ୍ କ୍ରୀଡାର ପତାକା ଦୁଇଟି ଆନ୍ତର୍ଜାତିକ ଶାନ୍ତି, ସଦ୍ଭାବ ଓ ବନ୍ଧୁତ୍ୱ ପାଇଁ ଉଦ୍ଦିଷ୍ଟ ।



ଏହାଛଡା ରେଡକ୍ରସ୍, ରେଡ୍ କ୍ରେସେଣ୍ଟ୍ (ଖଣ୍ଡିଆ ଜହ୍ନ), ରେଡ୍ ମାଗେନ୍ ଡେଭିଡ୍ ଓ ସୋଭିଏତ୍ ରେଡ୍ କ୍ରଶ୍‌ର ପତାକା ଆଉ ଏକ ଗୁରୁତ୍ୱପୂର୍ଣ୍ଣ ବାର୍ତ୍ତାର ବାହକ । ପୃଥିବୀରେ ଯୁଦ୍ଧ ଯୋଗୁଁ ହେଉଥିବା କ୍ଷୟକ୍ଷତିକୁ ରୋକିବା ଓ ଯୁଦ୍ଧବେଳେ ନିରପେକ୍ଷ ଭାବେ ଉଭୟ ପକ୍ଷକୁ ସହଯୋଗ କରିବା ପାଇଁ ଏହି ଅନୁଷ୍ଠାନଗୁଡିକୁ ଆରମ୍ଭ କରାଯାଇଥିଲା । ୧୮୬୩ ମସିହାରେ ଏଥିପାଇଁ ଜେନେଭାଠାରେ ଏକ ପ୍ରାଥମିକ ଆଲୋଚନାଚକ୍ର କରାଯାଇଥିଲା । ଏଠାରେ ନିଷ୍ପତ୍ତି ନିଆଗଲା ଯେ, ଯୁଦ୍ଧ ସମୟରେ ଡାକ୍ତରଖାନା ଓ ଆହତ ଲୋକଙ୍କ ସେବାଶୁଶ୍ରୂଷା କରିବା ଲୋକଙ୍କୁ ନିରପେକ୍ଷ ବୋଲି ଧରାଯିବ ।

ଖ୍ରୀଷ୍ଟିଆନ୍ ଦେଶର ଲୋକମାନେ ଯୁଦ୍ଧ କରୁଥିବା ସମୟରେ ତାଙ୍କର ଡାକ୍ତରଖାନା ଓ ଡାକ୍ତରୀ ଗାଡିର ଉପରେ 'କ୍ରଶ୍' ଚିହ୍ନ ରହୁଥିଲା । ଲାଲ୍ ରଙ୍ଗ ଉପରେ ଧଳାରେ ଏହାକୁ ଅଙ୍କା ଯାଉଥିଲା । କିନ୍ତୁ ରେଡ୍‌କ୍ରଶ ଏହାକୁ ଓଲଟାଇ ଧଳା ଉପରେ ଲାଲ୍ ରଙ୍ଗ କ୍ରଶ୍ ଚିହ୍ନ ରଖିଲା । ଏହା ସେବେଠାରୁ ରେଡ୍‌କ୍ରଶ୍‌ର ପ୍ରତୀକ ରୂପେ ଚଳି ଆସୁଛି । ଏହା ଅନୁସାରେ ଅନୁଷ୍ଠାନଟିର ନାମ ବି ରେଡକ୍ରଶ୍ ରହି ଆସିଛି ।





ମୁସଲିମ୍ ଦେଶଗୁଡିକରେ ଖଣ୍ଡିଆ ଜହ୍ନ ହେଉଛି ଏକ ପବିତ୍ର ସଙ୍କେତ । ଖ୍ରୀଷ୍ଟିଆନ୍‌ଙ୍କ କ୍ରଶ୍ ପରି ଏହାକୁ ସମ୍ମାନ ଦିଆଯାଇଥାଏ । ଏହାକୁ ୧୯୦୬ ମସିହାରେ ଗ୍ରହଣ କରାଯାଇଥିଲା । ଆଗରୁ ପର୍ସିଆ (ଏବେକାର ଇରାନ୍)ରେ ଲାଲ୍ ସିଂହ ସୂର୍ଯ୍ୟକୁ ଏହି ଉଦ୍ଦେଶ୍ୟରେ ବ୍ୟବହାର କରାଯାଉଥିଲା । କିନ୍ତୁ ଶାହା ରାଜତ୍ୱର ପତନ ସହିତ ଏହି ସଙ୍କେତ ମଧ୍ୟ ଉଠିଗଲା । ଏହିପରି ଆଉ ଏକ ଗୁରୁତ୍ୱପୂର୍ଣ୍ଣ ପତାକା ଥିଲା ରେଡ୍ ମାଗେନ୍ ଡେଭିଡ୍ ପତାକା । ୧୯୪୮ ମସିହାରେ ଇସ୍ରାଏଲ୍‌ରେ ଏହାକୁ ରେଡକ୍ରଶ୍ ବା ରେଡ୍ କ୍ରେସେଣ୍ଟ୍ ପରି ଏକ ଲକ୍ଷ୍ୟ ନେଇ ଗ୍ରହଣ କରାଯାଇଥିଲା ।



## ବାପାଙ୍କ କଥା ସରିଲା

ପତାକା ଯେ ଏତେ ରକମର ହୋଇଥାଇପାରେ ଏହା କୁନୁ ଓ ରାନୁଙ୍କ ଧାରଣାର ବାହାରେ ଥିଲା । ସେମାନେ ବିଭିନ୍ନ ବହିରୁ ପତାକା ଛବି ଦେଖୁ ଦେଖୁ ସେଗୁଡିକର କାହାଣୀ ଶୁଣି ଚାଲିଥିଲେ । ସମୟ ଅଭାବ ଯୋଗୁଁ ସେମାନେ ଆଜି ଦେଶବିଦେଶର ବିଭିନ୍ନ ପତାକା ବିଷୟରେ ଅଧିକା କିଛି ପଚାରିପାରି ନଥିଲେ । କିନ୍ତୁ ବହିର ବିଭିନ୍ନ ଜାଗାରେ ରହିଥିବା ବିସ୍ତୃତ ଲେଖାଗୁଡିକୁ ସେମାନେ ଭଲ ରୂପେ ଲକ୍ଷ୍ୟ କରି ଥିଲେ । ପରେ ସେମାନେ ନିଜେ ତାହାକୁ ପଢିବେ ଓ ଆଲୋଚନା କରି ପାରିବେ । ପତାକା ବିଷୟରେ ଏତେ କଥା ଜାଣି ପାରିଥିବାରୁ ତାଙ୍କୁ ଖୁବ୍ ଖୁସି ଲାଗୁଥାଏ । ଆସନ୍ତା କାଲିର ପତାକା ଉତ୍ତୋଳନ କଥା ମନେ ପକାଇ ସେମାନେ ଉଲୁସି ଉଠୁଥାନ୍ତି । କିନ୍ତୁ ତାଙ୍କ ମନରେ ଭୋକ ବଢିଯାଇଥାଏ, ନିଜ ଦେଶର ସୁନ୍ଦର ତ୍ରିରଙ୍ଗା ପତାକାଟି ବିଷୟରେ ଜାଣିବା ପାଇଁ । ବୋଉ ଏହା ବିଷୟରେ କହିବେ । ତେଣୁ ଦୁହେଁ ରୋଷେଇ ଘର ଆଡକୁ ଅନାଇଲେ । କୁନୁ ଡାକ ପକାଇଲା 'ବୋଉ, ରୋଷେଇ ସରିଲାଣି ? ଆମକୁ ତ୍ରିରଙ୍ଗା ବିଷୟରେ କହିବ ପରା ? ଜଲ୍‌ଦି ଆସ ।'

ପଛଆଡୁ ଜୋର୍‌ରେ ହସ ଶୁଭିଲା । ବାପା ବି ହସ ମିଳାଇ ଦେଲେ । ବୋଉ କେତେବେଳୁ କାମ ସାରି ସେମାନଙ୍କ ପଛରେ ବସି ଯାଇଥାନ୍ତି । ସେ ବାପାଙ୍କ ଠାରୁ ବିଦେଶୀ ପତାକାର କାହାଣୀ ଶୁଣିବା ସାଙ୍ଗକୁ ପିଲା ଦୁହିଁଙ୍କ ଆଗ୍ରହ ଓ ବୁଝିବାର ସୀମାକୁ ଲକ୍ଷ୍ୟ କରୁଥାଆନ୍ତି । ତେଣେ ନିଜେ କ'ଣ, କିପରି ବୁଝାଇବେ ଭାବି ଚାଲିଥାନ୍ତି । ବାପାଙ୍କ କଥା ଶୁଣିସାରି ପିଲାଏ ଏଥର ବୋଉଙ୍କ ଆଡକୁ ମୁହାଁଇଲେ ।

## ତ୍ରିରଙ୍ଗାର କାହାଣୀ ବୋଉଙ୍କ ମୁହଁରୁ ...

ବୋଉ ଆରମ୍ଭ କଲେ, 'ତୁମେ ଏ ଯାଏଁ ବିଭିନ୍ନ ଦେଶର ପତାକାର କାହାଣୀ ଶୁଣୁଥିଲ । ତୁମେ ଏତିକି ଅନୁଭବ କରିଥିବ ଯେ ସବୁ ଦେଶର ପତାକା ଏକା ସମୟରେ ତିଆରି ହୋଇନାହିଁ । କେତେକ ଦେଶର ପତାକା ବହୁତ ପୁରୁଣା; କିନ୍ତୁ କେତେକ ପତାକା ଏବେ ନିକଟରେ ବନାଯାଇଛି । ପତାକା ହେଉଛି ପ୍ରକୃତରେ ଗୋଟିଏ ଦେଶର ସଂକ୍ଷିପ୍ତ ପ୍ରତୀକ । ଦେଶଟିର ସଭ୍ୟତା, ସଂସ୍କୃତି, ରାଜନୈତିକ ପୃଷ୍ଠଭୂମି ଓ ଲକ୍ଷ୍ୟକୁ ଆଧାର କରି ପତାକାଟି ରୂପ ପାଏ । ତେଣୁ ସଭିଏଁ ପରସ୍ପରଠାରୁ ଅଲଗା । କେବଳ ଦେଶର ରାଜନୈତିକ ଓ ସାଂସ୍କୃତିକ ସମ୍ପର୍କ ବା ଆଦରକୁ ନେଇ ପତାକାଗୁଡିକରେ କିଛି କିଛି ମେଳ ରହିଛି । ଗୋଟିଏ ଦେଶର ପତାକା ତା ପାଇଁ ଏତେ ମୂଲ୍ୟବାନ ଯେ ସେ ଆଉ ଏକ ଦେଶର ପତାକାକୁ ସମ୍ମାନ ଦେଖାଇଲେ ବି ଗ୍ରହଣ କରିପାରେ ନାହିଁ । ପତାକାଗୁଡିକୁ ପରସ୍ପର ସହ ତୁଳନା ବି କରିହୁଏ ନାହିଁ । ଏହା ପ୍ରତ୍ୟେକ ଦେଶ ପାଇଁ ସର୍ବୋଚ୍ଚ ଅମୂଲ୍ୟ ସମ୍ପଦ ।

ଏଥର ଆମ ଦେଶକୁ ଦେଖିବା । ପୃଥିବୀରେ ଭାରତ ଗୋଟିଏ ଅତି ପୁରୁଣା ଦେଶ । ପୃଥିବୀର ଆଦିମ ଦେଶଗୁଡିକ ମଧ୍ୟରେ ଏହା ଗୋଟିଏ ଭାବରେ ଗଣା ହୁଏ । କିନ୍ତୁ ମଜାକଥା ହେଉଛି, ଆମ ପ୍ରିୟ ତ୍ରିରଙ୍ଗା ପତାକାଟି ଅଧିକ ପୁରୁଣା ନୁହେଁ । ଆମ ଦେଶ ପ୍ରାୟ ପାଞ୍ଚହଜାର ବର୍ଷ ପୁରୁଣା । କିନ୍ତୁ ପତାକା ମାତ୍ର ଏଇ ଶତକରେ ହିଁ ମୁଣ୍ଡ ଟେକିଛି । ଏହାର କାରଣଟିକୁ ବୁଝିବାକୁ ଚେଷ୍ଟା କରିବା ।

ଭାରତବର୍ଷର ଇତିହାସ କହେ, ପୃଥିବୀରେ ଭାରତ ଜୀବନର କଳାତ୍ମକ ଦିଗରେ ଯଥେଷ୍ଟ ଆଗେଇ ପାରିଥିଲା । ଏଠାରେ ଜୀବନଧାରା ବିଶେଷ ପ୍ରଚାରଧର୍ମୀ ନଥିଲା । ସାହିତ୍ୟ, ସଂସ୍କୃତି, ବିଜ୍ଞାନ, କଳା, କାରିଗରୀ ଆଦି କ୍ଷେତ୍ରରେ ଏହାର ମୌଳିକତା ଓ ବୈଷୟିକ ଗଭୀରତା ଥିଲା । କିନ୍ତୁ ଗବେଷଣାର ବିଭିନ୍ନ ଦିଗକୁ ଟିକିନିଖି ଭାବେ ଟିପି ରଖିବାର ପରମ୍ପରା ନଥିଲା । ଲୋକେ ବିଭିନ୍ନ ତଥ୍ୟକୁ ଶୁଣି ଶୁଣି ମନେ ରଖୁଥିଲେ ଓ କାମରେ ଲଗାଉଥିଲେ । ନିଜ ଜାଗାର ମାଟି, ପାଣି, ପବନକୁ କାମରେ ଲଗାଇ ଜୀବନଧାରାକୁ ସରଳ, ସୁନ୍ଦର ଓ ସାବଲୀଳ କରିବାର ବିଭିନ୍ନ ବାଟ ସେମାନେ ବାହାର କରୁଥିଲେ । ଏଠାରେ ସଭିଏଁ ସରଳ ଓ ସୁଖ ଶାନ୍ତିରେ ଜିଇଁବାର ବାଟ ରହିଥିଲା ।



କିନ୍ତୁ ଆରପଟେ ୟୁରୋପୀୟ ଦେଶଗୁଡ଼ିକର ଜଳବାୟୁ ସାଙ୍ଗକୁ ମଣିଷର ଦୃଷ୍ଟିକୋଣ ବି ଅଲଗା ଥିଲା । ଭାରତ ପରି ଜଳବାୟୁ ଏଠାରେ ଏତେ ସୁଖକର ନଥିଲା । ପ୍ରବଳ ଥଣ୍ଡା ବା ଅତିଶୟ ଗରମ ଯୋଗୁଁ ଲୋକେ ଅଧିକ ପ୍ରାକୃତିକ ବିପଦର ସାମନା କରୁଥିଲେ । ତେଣୁ ସେମାନେ ଅଧିକ କଷ୍ଟସହିଷ୍ଣୁ ଓ ପରିଶ୍ରମୀ ହେଉଥିଲେ । ସେମାନଙ୍କୁ ଜିଇଁବା ପାଇଁ ଅଧିକ ସଂଘର୍ଷ କରିବାକୁ ପଡୁଥିଲା । ତେଣୁ ସେମାନେ ଦୁଃସାହସୀ ବି ହେଉଥିଲେ । ପ୍ରକୃତିରେ ସୁଖକର ବସବାସ ପାଇଁ ସେମାନେ ବିବିଧ ପରୀକ୍ଷା ନିରୀକ୍ଷା ଚଳାଉଥିଲେ । ଆବଶ୍ୟକତା ହେତୁ ଏଠାରେ କାରିଗରୀ ବିଜ୍ଞାନ ଅଧିକ ମାଜି ହେଉଥିଲା । ସେମାନଙ୍କ କାମଧାରାରେ ଆଉ ଏକ ବଡ ଦିଗଥିଲା- ଗବେଷଣାର ପ୍ରତ୍ୟେକ ଦିଗକୁ ଟିପି ରଖିବା ଓ ଲୋକଙ୍କ ପାଖରେ ଲିଖିତ ରୂପରେ ପହଞ୍ଚାଇବା । ଏହି ପରମ୍ପରାରେ ବଢ଼ିବା ଫଳରେ ଏହି ଦେଶର ଲୋକେ ଦୁଃସାହସୀ, ପରୀକ୍ଷାବାଦୀ ଓ କୌତୂହଳୀ ହୋଇ ବାହାରିଲେ । ନିଜର ଜାଗାରେ ବିଭିନ୍ନ ପରୀକ୍ଷା ନିରୀକ୍ଷା ସାଙ୍ଗକୁ ଦେଶ ବାହାର ଇଲାକାରେ ଖୋଜା ପରଖା ଚଳାଇଲେ । ଏମାନେ ବେଶ୍ ପ୍ରଚାରଧର୍ମୀ ବି ଥିଲେ ।

ଉଭୟକୁ ମିଳାଇ ଦେଖିଲେ ଆମେ ଜାଣିପାରିବା ଯେ ଭାରତ ପରି ଦେଶ ନୀରବ ଭାବେ, ରକ୍ଷଣଶୀଳ ହୋଇ ଅଳପେ ସନ୍ତୁଷ୍ଟ ରହିଲା ବେଳକୁ ପାଶ୍ଚାତ୍ୟର କେତେକ ଦେଶ ଅତି ଉଗ୍ର ଓ ଭୋକିଲା ଭାବରେ ଜୀବନରେ ଶାରିରୀକ ସୁଖ ସୁବିଧାର ପ୍ରାଚୁର୍ଯ୍ୟ ପାଇଁ ଏଣେତେଣେ ଖୋଜିବୁଲିଲେ । ସେମାନେ ନୂଆ ନୂଆ ଦେଶରେ ପାଦ ପକାଇଲେ ଓ ନିଜର ପ୍ରାଧାନ୍ୟ ବିସ୍ତାର କଲେ । ପୃଥିବୀର ବିଭିନ୍ନ ଜାଗାର ସମ୍ପଦକୁ ନିଜ ରୁଚି ଅନୁସାରେ କାମରେ ଲଗାଇଲେ ଓ ନିଜକୁ ସର୍ବଯୋଗ୍ୟ ବୋଲି ବିଚାର କରି ରାଜତ୍ୱ ଚଳାଇଲେ । ତାଙ୍କର ଏହି ଦିଗ୍‌ବିଜୟୀ ଅଭିଯାନର ଗୌରବମୟ ସାଥି ଥିଲା ତାଙ୍କର ପତାକା ଓ ପ୍ରତୀକ ।

କିନ୍ତୁ ଭାରତ ପରି ଦେଶର ବିଚାରଧାରା ଅଧିକ ନମ୍ର, ଉଦାର ଓ ମାନବକଲ୍ୟାଣକାରୀ ଥିଲା । ପୁରାତନ ଭାରତର ଜାତୀୟ ପତାକା ବା ଜାତୀୟ ପ୍ରତୀକ ବୋଲି କିଛି ପ୍ରାୟ ନ ଥିଲା ।

ଏହି ବିଶାଳ ଭୂଖଣ୍ଡଟିର ବିଭିନ୍ନ ଜାଗାରେ ପ୍ରଚୁର ସମ୍ପଦ ରହିଥିଲା; ବିଭିନ୍ନ ଜାଗାରେ ରାଜାମାନେ ନିଜ ନିଜ ରାଜ୍ୟ ପରିଚାଳନା କରୁଥିଲେ । ରାଜତ୍ୱର ସବୁ ଦିଗ ଯେ ଠିକ୍ ଥିଲା ତାହା କହିବା ଠିକ୍ ହେବ ନାହିଁ । କିନ୍ତୁ ମୋଟ ଉପରେ ଦେଶର ବିବିଧତା ଭିତରେ ଏକତା ଥିଲା । ଏକତା ବି କେତେ ପରିମାଣରେ ଓ କିପରି ଭାବରେ ରହିବା ଆବଶ୍ୟକ ତାହା ଏକ ଆଲୋଚନାର ବିଷୟ । ଅପର ପକ୍ଷରେ ଗ୍ରୀସ୍, ରୋମ୍, ପର୍ତ୍ତୁଗାଲ୍, ବ୍ରିଟେନ୍ ଆଦି ଦେଶର ଲୋକ ପୃଥିବୀର ନୂଆ ନୂଆ ଭୂଖଣ୍ଡ ଆବିଷ୍କାର କରି ନିଜର ସାମ୍ରାଜ୍ୟବାଦ ବଢ଼ାଇବାରେ ଲାଗିଥିଲେ । ସେମାନେ ନିଜ ପତାକା ଓ ରାଜତ୍ୱ ବଢାଇବା ପାଇଁ ଯଥେଷ୍ଟ ଭୋକିଲା ଥିଲେ ।

## ଭାରତ ଭୂଇଁରେ ବିଦେଶୀ ପତାକା

ଭାରତର କଳାତ୍ମକ ବିକାଶ ପୃଥିବୀର ବିଭିନ୍ନ ବିକାଶଶୀଳ ଦେଶର ଦୃଷ୍ଟି ଆକର୍ଷଣ କରିଥିଲା, ଏହାର ଧନ ଓ ଜ୍ଞାନର ପ୍ରଭାବରେ ଆକର୍ଷିତ ହୋଇ ଏଠାକୁ ଅନେକ ଦେଶରୁ ଲୋକ ଆସିଥିଲେ । ଶିକ୍ଷାର୍ଥୀ ରୂପରେ ପୃଥିବୀ ବିଭିନ୍ନ ଜାଗାରୁ ଲୋକ ଏଠାକାର ନାଳନ୍ଦା, ତକ୍ଷଶିଳା ଆଦି ଶିକ୍ଷାସ୍ଥଳୀକୁ ଆସିଥିବାର ନଜିର ରହିଛି । ପରିବ୍ରାଜକମାନେ ବି ଏଠାକୁ ଆସିଛନ୍ତି ଏହାର ଇତିହାସ ଓ ସଂସ୍କୃତିକୁ ଅନୁଧ୍ୟାନ କରିବା ପାଇଁ । ଏଠାକୁ ଆଉ ଦଳେ ଆସିଲେ ଏ ଦେଶର ଧନସମ୍ପତ୍ତି ପ୍ରତି ଆକୃଷ୍ଟ ହୋଇ । ସେମାନେ ଦେଶକୁ ଆକ୍ରମଣ କଲେ, ଅନେକ ଧନଜୀବନ ହାନି କରାଇଲେ ଓ ଅନେକ ଧନସମ୍ପତ୍ତି ଧରି ନିଜ ଦେଶକୁ ଚାଲିଗଲେ । ରୋମ, ଗ୍ରୀସ୍ , ଚୀନ୍ ଓ ଆରବ ଆଦି ଦେଶର ଯୋଦ୍ଧା ଭାରତ ଭୂଇଁରେ ନିଜ ପତାକା ଉଡାଇ ଫେରିଗଲେ ।

ତଥାପି ସରିଲା ନାହିଁ । ଆହୁରି ନୂଆ ନୂଆ ଦଳ ଆସିଲେ ବେପାରୀ ରୂପରେ - ପର୍ତ୍ତୁଗାଲରୁ, ଫ୍ରାନ୍ସରୁ, ହଲାଣ୍ଡରୁ ଓ ଇଂଲଣ୍ଡରୁ । ବେପାର ସାଙ୍ଗକୁ ତାଙ୍କର ରାଜନୀତି ଚାଲିଲା । ସାଧାରଣରୁ ବଢ଼ି ବଢ଼ି ସେମାନଙ୍କ ରାଜା ଓ ରାଜାତ୍ୱକୁ ନେଇ ବି ବେପାର କଲେ । ଦେଶରେ ଏକତାର ଅଭାବର ସୁଯୋଗ ନେଇ ସେମାନେ ଏପରି ଷଡଯନ୍ତ୍ର କଲେ ଯେ ଶେଷରେ ଏ ଦେଶର ଆଉ ରାଜା ବୋଲି କେହି ରହିଲେ ନାହିଁ । ଏଠାରେ ଜଣେ ରହିଲେ ରାଜା - ସେ ଥିଲେ ଇଂଲଣ୍ଡର ରାଜା । ଭାରତ କହିଲେ ରହିଲା ବ୍ରିଟିଶ୍ ସିଂହର ପନ୍ଝା ତଳେ ରହି ଆର୍ତ୍ତନାଦ କରୁଥିବା ଦଳେ ଭାରତୀୟ । ଭାରତ ଭୂଇଁରେ ଉଡିଲା ଇଂଲଣ୍ଡର ପତାକା - ୟୁନିଅନ୍ ଜାକ୍ ।

ଭାରତଟା ବ୍ରିଟେନ୍‌ର ହୋଇଗଲା । ଅନ୍ୟ ଦେଶର ଲୋକଙ୍କ ସାଙ୍ଗରେ ମୁଣ୍ଡଟେକି ଠିଆ ହେବାର ଅଧିକାର ଏ ଦେଶ ହରାଇଲା । ଆମ ଦେଶର ଲୋକେ ବ୍ରିଟିଶ ପତାକାକୁ ସମ୍ମାନ ଦେଖାଇବାକୁ ବାଧ୍ୟ ହେଲେ । ଉତ୍ସବ ଦିନମାନଙ୍କରେ ବ୍ରିଟିଶ୍ ରାଜାଙ୍କର ଗୁଣ ଗାଇବାକୁ ହେଲା । ତାଙ୍କର ଜାତୀୟ ସଙ୍ଗୀତ ବୋଲା ହେଲା । ଏ ସବୁ କରିବାକୁ ଏ ଦେଶ ବାଧ୍ୟ ହେଲା । ଏହା ପଢ଼ିଲାବେଳେ ବି ରକ୍ତ ଗରମ ହୋଇଯାଉଛି । କିନ୍ତୁ ଏହା ପରୀ କାହାଣୀ ନୁହେଁ, ଏହା ଏକ ସତ ଘଟଣା ... ଆମ ଅଜା, ଆଈ, ବାପା, ମା'ଭୋଗିଥିବା ନିଛକ ସତ ଘଟଣା !



ଦେଶଟାଯାକର ଲୋକ ଗୋରାଙ୍କର ମାଲିକାନା ଓ ଅମାନବିକ ଅତ୍ୟାଚାର ସହିବାକୁ ବାଧ ହେଲେ । ନ ମାନିଲା ଲୋକକୁ ସବୁରକମର ଶାରିରୀକ ଯନ୍ତ୍ରଣା, ଏପରିକି ମୃତ୍ୟୁଦଣ୍ଡ ବି, ଦିଆଗଲା । ମନ ଯେତେ ବିଦ୍ରୋହ କଲେ ମଧ ଏଥିରୁ ମୁକୁଳିବା ପାଇଁ ଏ ଜାତିର ବଳ ନ ଥିଲା । ଦେଢ଼ ଶହ ବର୍ଷ ଧରି ଏଠାରେ ୟୁନିଅନ୍ ଜାକ୍ ଉଡିଲା । ଏଠାକାର ଲୋକ ବାଧ ହୋଇ ଗୋଟିଏ ଶତକ ଧରି ବ୍ରିଟିଶ୍ ନିର୍ଯ୍ୟାତନା ଓ ଶୋଷଣକୁ ସହିଲେ । ଯେଉଁଠି ବି ଏହା ବିରୁଦ୍ଧରେ ସ୍ୱର ଉଠିଲା, ତାର ମୁହଁକୁ ' ହାତରେ ନୁହେଁ, ଭାତରେ ବିଷ ଦେଇ ' ବନ୍ଦ କରି ଦିଆଗଲା । ସବୁଠୁ ବଡ ଅଭାବ ଥିଲା ଭାରତରେ ଏକତା ଓ ଜାତୀୟତାର ଅଭାବ । ଧୀରେ ଧୀରେ ଲୋକଙ୍କ ଅସନ୍ତୋଷରେ ନିଆଁ ଧରିଲା । ଦେଶରେ ସଂଗ୍ରାମର ଢେଉ ଖେଳିଲା । ଲୋକେ ଏକାଠି ହୋଇ ଗୋରା ଶାସନର ବିରୋଧ କଲେ । ଏହାର ନେତୃତ୍ୱ ନେଲେ ଲାଲ୍ ଲଜ୍‌ପତ୍ ରାୟ, ବାଲ୍‌ଗଙ୍ଗାଧର ତିଳକ, ଗୋପାଳ କୃଷ୍ଣ ଗୋଖଲେ, ଭଗତ୍ ସିଂ, ଚନ୍ଦ୍ର ଶେଖର ଆଜାଦ୍, ମହାତ୍ମା ଗାନ୍ଧୀ, ସୁଭାଷ ବୋଷ । ଜୀବନ ପ୍ରତି ବାଜି ଲଗାଇ ସମସ୍ତେ ସ୍ୱାଧୀନତା ସଂଗ୍ରାମରେ ଭାଗନେଲେ । ଲକ୍ଷ ଲକ୍ଷ କେତେ ବୀରାବୀର ଟଳି ପଡିଲେ ।

## ଭାରତୀୟ ପତାକା ମୁଣ୍ଡ ଟେକିଲା

ଏହି ଗୁରୁତ୍ୱପୂର୍ଣ୍ଣ ସମୟରେ ଭାରତର ପତାକା ଜନ୍ମ ନେଲା । ଏହି ବିଶାଳ ଦେଶର ଜନତାଙ୍କ ଶକ୍ତିକୁ ଏକମୁହାଁ କରି ବ୍ରିଟିଶ୍‌ରାଜ୍ ବିରୁଦ୍ଧରେ ଲଗାଇବା ଦିଗରେ ଏହା ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । କିନ୍ତୁ ସେତେବେଳେ ଏହାର ରୂପ ବେଶ୍ ଅଲଗା ଥିଲା । ୧୯୦୬ ମସିହାରେ ବଙ୍ଗ ବିଭାଜନ ପାଇଁ ନିଷ୍ପତ୍ତିକୁ ଘୋଷଣା କରାଯାଇଥିଲା । ବଙ୍ଗ ଭଙ୍ଗକୁ ବିରୋଧ କରି ପ୍ରବଳ ଜନଅସନ୍ତୋଷ ଦେଖାଦେଇଥାଏ । ସେହି ବର୍ଷ ଅଗଷ୍ଟ ୭ ତାରିଖ ଦିନ କଲିକତାର ଗ୍ରୀନ୍‌ପାର୍କଠାରେ ଏକ ବଡ ଜନସମାଗମ ହୋଇଥିଲା । ଏହି ସମୟରେ ସେଠାରେ ଏକ ତିନି

ରଙ୍ଗର ପତାକା ଉତ୍ତୋଳନ କରାଯାଇଥିଲା । ଏହାର ଉପର ଭାଗରେ ଲାଲ, ମଝି ଭାଗରେ ହଳଦିଆ ଓ ତଳଭାଗରେ ସବୁଜ ରଙ୍ଗ ଦିଆଯାଇଥିଲା । ଲାଲ ରଙ୍ଗ ମଝିରେ ଆଠଟି ପଦ୍ମଫୁଲ ଅଙ୍କା ଯାଇଥିଲା । ମଝିରେ ହଳଦିଆ ରଙ୍ଗ ମଧ୍ୟରେ ସଂସ୍କୃତରେ 'ବଂଦେ ମାତରମ୍' ଲେଖାଯାଇଥିଲା । ତଳର ସବୁଜ ରଙ୍ଗର ବାମ ପାଖରେ ସୂର୍ଯ୍ୟ ଓ ଡାହାଣ ପାଖରେ ଥିଲା ଚନ୍ଦ୍ର ଓ ତାରା ।

ସେହି ସମୟରେ ଜଣେ ମହିଳା ଆମ ଦେଶ ପାଇଁ ଏକ ପତାକା ତିଆରି କରିଥିଲେ । ତାଙ୍କ ନାଁ ଥିଲା ମାଡାମ୍ କାମା । ପୂରା ନାମ ମାଡାମ୍ ଭିକାଜୀ ରୁସ୍ତମ୍ କାମା । ସେ ମହାରାଷ୍ଟ୍ରର କାଥିଆବାଡ ଠାରେ ଏକ ପାର୍ଶୀ ପରିବାରରେ ଜନ୍ମ ହୋଇଥିଲେ । ଜୀବନର ପ୍ରଥମ ଭାଗରେ ସେ ଇଂଲଣ୍ଡରେ କାମ କରିଥିଲେ । ତା'ପରେ ସେ ପାରିସ୍‌ରେ ରହିଥିଲେ । ୟୁରୋପରେ ତାଙ୍କ ବାସଭବନଟି ଭାରତୀୟ ବିପ୍ଳବୀମାନଙ୍କ ପାଇଁ ଆଶ୍ରୟସ୍ଥଳୀ ଥିଲା । ସେ ନିଜେ ଜଣେ ବିପ୍ଳବୀ ମହିଳା ଥିଲେ । ସେ 'ବନ୍ଦେ ମାତରମ୍' ନାମକ ଏକ ପତ୍ରିକା ପ୍ରକାଶ କରୁଥିଲେ । ଏଥିରେ ସେ ଭାରତ ପାଇଁ ଗୋଟିଏ ଜାତୀୟ ପତାକାର ଛବିର ପରିକଳ୍ପନା କରିଥିଲେ । ଏଥିରେ ବି ତିନୋଟି ସମାନ୍ତରାଳ ପଟି ଥିଲା । ଏହାର ଉପରଭାଗ ଗାଢ଼ ହଳଦିଆ, ମଝିଭାଗ ଧଳା, ତଳଭାଗ ସବୁଜ ଥିଲା । ଉପରେ ଭାଗଟିରେ ୮ଟି ପଦ୍ମଫୁଲ ଥିଲା । ଧଳା ପଟିଟିରେ ହିନ୍ଦୀରେ ' ବନ୍ଦେ ମାତରମ୍' ଲେଖାଯାଇଥିଲା । ତଳଭାଗଟିରେ ଖଣ୍ଡିଆ ଜହ୍ନ ଓ ତାରା ଚିହ୍ନ ରହିଥିଲା ।

୧୯୧୬ ମସିହାରେ ଭାରତରେ ସ୍ୱାୟତ୍ତ ଶାସନ (ହୋମ୍ ରୁଲ୍) ପାଇଁ ଏକ ଆନ୍ଦୋଳନ ହୋଇଥିଲା । ଲୋକମାନ୍ୟ ବାଲ୍ ଗଙ୍ଗାଧର ତିଳକ ଓ ଆନି ବେସାନ୍ତ୍ ଏହି ଆନ୍ଦୋଳନରେ ପୁରୋଧା ଥିଲେ । ସେହି ସମୟରେ ଆଉ ଏକ ଧରଣର ପତାକା ଚଳାଇବା ପାଇଁ ସେମାନେ ଠିକ୍ କଲେ । ଏହି ପତାକାର ଗୋଟିଏ ପାଖରେ ସପ୍ତର୍ଷି ମଣ୍ଡଳ ଓ ଆରପାଖରେ ୟୁନିଅନ୍ ଜାକ୍‌ର ଛବି ଥିଲା । ଏହି ପତାକା ସୂଚାଉଥିଲା ଯେ ବ୍ରିଟିଶ୍ ରାଜ୍ୟଗୋଷ୍ଠୀ ଭିତରେ ଭାରତ ଗୋଟିଏ ଉପନିବେଶ । ସେତେବେଳେ ଲୋକଙ୍କ ମଧ୍ୟରେ ବ୍ରିଟିଶ ରାଜତ୍ୱ ପ୍ରତି ଅସନ୍ତୋଷ କୁହୁଳିବାରେ ଲାଗିଥାଏ । ତେଣୁ ଏହି ପତାକାଟି କ୍ରମେ ଗ୍ରହଣୀୟ ହେଲା ନାହିଁ ।

ଏହାପର ପର୍ଯ୍ୟାୟରେ ଭାରତର ରାଜନୀତିରେ ଗାନ୍ଧିଜୀଙ୍କ ଆବିର୍ଭାବ ଏକ ନୂଆ ଅଧ୍ୟାୟ ସୃଷ୍ଟି କଲା । ଗାନ୍ଧିଜୀ ଲୋକଙ୍କ ସହ ନିବିଡ ଭାବରେ ମିଶି ଦେଶକୁ ମୁକୁଳାଇବା ପାଇଁ ଅହିଂସାକୁ ହିଁ ଶ୍ରେଷ୍ଠ ବାଟ ରୂପେ ବାଛିଲେ । ତାଙ୍କର ଯୋଜନା ରହିଲା, ଲୋକଙ୍କ ମଧ୍ୟରେ ଏପରି ବିଶ୍ୱାସ ଅଣାଯିବ, ଯେପରି ସେମାନେ ଏକାଠି ହୋଇ ବ୍ରିଟିଶ ସରକାରକୁ ହଟାଇବେ ଓ ନିଜ ବଳରେ ହିଁ ଦେଶକୁ ଗଢିବେ । ଦେଶର ମୌଳିକ ବିକାଶ ପାଇଁ ସେ ଦେଶୀ କଳା, କଉଶଳ ଓ ଦକ୍ଷତାର ବିକାଶ ଉପରେ ଗୁରୁତ୍ୱ ଦେଲେ । ତାଙ୍କର ଆଘୋଷ ରହିଲା, 'କୁଟି ଖାଅ, କାଟି ପିନ୍ଧ ' ଏବଂ ପ୍ରତୀକ ରହିଲା 'ଚରଖା', ଯାହା ପଛରେ ଏକ ଗଭୀର, ବିକାଶମୂଳକ ବିଚାର ଥିଲା ।



୧୯୨୦ ମସିହାରେ ଗାନ୍ଧିଜୀ ଜାତୀୟ କଂଗ୍ରେସର ନେତୃତ୍ୱ ନେଲେ । ସେ ଯାଏଁ ସରକାରୀ ଓ ବେସରକାରୀ ସଭାସମିତିଗୁଡ଼ିକରେ ବ୍ରିଟିଶ୍ ଭାରତୀୟ ପତାକା ବ୍ୟବହାର କରାଯାଉଥିଲା । ପ୍ରଥମ ଅବସ୍ଥାରେ ଗାନ୍ଧିଜୀ ଭାବୁଥିଲେ, ବ୍ରିଟିଶ୍ ରାଜ୍ୟଗୋଷ୍ଠୀର ସଭ୍ୟ ଭାବରେ ରହି ଭାରତ କିଛି ସୁବିଧା ପାଇପାରିବ । କିନ୍ତୁ ତାଙ୍କର ଏହି ବିଶ୍ୱାସ ପୂରାପୂରି ଦୋହଲିଗଲା, ଯେତେବେଳେ ଜାଲିଆନାୱାଲାବାଗ୍‌ରେ ୧୯୧୯ ମସିହାରେ ଗୋରା ସୈନ୍ୟମାନେ ଭାରତୀୟମାନଙ୍କୁ ଅତି ନିର୍ଦ୍ଦୟ ଓ ବର୍ବର ଭାବରେ ଗଣହତ୍ୟା କଲେ । ଏହାପର ଠାରୁ ଗାନ୍ଧିଜୀ ଭାରତୀୟମାନଙ୍କୁ ଏକାଠି କରି ଇଂରେଜ ବିରୁଦ୍ଧରେ ଲଢ଼ିବା ପାଇଁ ଡାକରା ଦେଲେ । ଗୋଟିଏ ପତାକା ତଳେ ଠିଆ ହୋଇ ସମସ୍ତ ବଳକୁ ଇଂରେଜ ସରକାର ବିରୁଦ୍ଧରେ ଲଢ଼ିବା ପାଇଁ ଜନମତ ଜାଗି ଉଠିଲା ।

୧୯୨୧ ମସିହାରେ ଆନ୍ଧ୍ରପ୍ରଦେଶର ବିଜୟୱାଡ଼ାଠାରେ ଜାତୀୟ କଂଗ୍ରେସ୍ ବୈଠକ ବସିଲା । ଏହି ଅଧିବେଶନ ସମୟରେ ଜଣେ ସ୍ଥାନୀୟ ଯୁବକ ଗାନ୍ଧିଜୀଙ୍କୁ ଗୋଟିଏ ପତାକା ଉପହାର ଦେଲେ । ଏଥିରେ ଗୋଟିଏ ଲାଲ୍ ପଟି ଓ ଗୋଟିଏ ସବୁଜ ପଟି ଥିଲା । ଗାନ୍ଧିଜୀ ଏହାକୁ ଆଦର କଲେ । ଏହି ଦୁଇପଟିର ମଝିଭାଗରେ ଏକ ସମାନୁପାତିକ ଧଳା ପଟି ରଖି ଏଥିରେ ଚରଖା ଛବିଟିକୁ ନୀଳ ରଙ୍ଗରେ ବସାଇବାକୁ ସେ ଯୁବକଙ୍କୁ ଉପଦେଶ ଦେଲେ । ଚରଖା ଥିଲା ସ୍ୱଦେଶର ପ୍ରତୀକ । ପରଦିନ ଯୁବକ ଜଣକ ଖଦଡ କନାରେ ଏହି ପତାକାଟିକୁ ବନାଇ ପହଞ୍ଚିଲେ । ଗାନ୍ଧିଜୀ ନିଜେ ଏହି ପତାକାଟିକୁ ସେଠାରେ ଉତ୍ତୋଳନ କଲେ । ସେବେଠାରୁ ଏହା ଜାତୀୟ କଂଗ୍ରେସର ପତାକା ରୂପେ ସବୁଆଡ଼େ ବ୍ୟବହାର କରାଗଲା ।

ଆମର ରୋମାଞ୍ଚକାରୀ ସ୍ୱାଧୀନତା ସଂଗ୍ରାମର ଅନେକ ଘଟଣାର ମୂକ ଓ ଚିରସାକ୍ଷୀ ଏହି ଜାତୀୟ ପତାକା । ଏହାକୁ ଉତ୍ତୋଳନ କରି ଗାନ୍ଧିଜୀ ଇଂରେଜ ସରକାର ବିରୁଦ୍ଧରେ ଏକ ବଳିଷ୍ଠ ଅସ୍ତ୍ର ଠିଆ କରିଥିଲେ । ସେବେଠାରୁ ଭାରତର ବିଭିନ୍ନ ସ୍ଥାନରେ ଏହି ପତାକାକୁ ଧରି ଲୋକେ ଦଳ ଦଳ ହୋଇ ଇଂରେଜ ସରକାରର ବିରୋଧ କଲେ । ଏପରିକି ପିଲାମାନେ

'ବାନରସେନା' ରୂପେ ଓ ମହିଳାମାନେ ବି ଏହି ପତାକାକୁ ଧରି ଇଂରେଜ ଶକ୍ତି ସହ ଯୁଝିବା ପାଇଁ ବଳ ପାଇଲେ । ଆଗର ବ୍ରିଟିଶ୍ ଭାରତୀୟ ପତାକା ବଦଳରେ ଜାଗା ଜାଗାରେ ଏହି ପତାକା ମୁଣ୍ଡ ଟେକିଲା । ଏହା ଯେତେ ସଂଖ୍ୟାରେ ମୁହଁ ଦେଖାଇଲା, ଇଂରେଜ ସରକାରର ଆସନ ସେତିକି ବେଶୀ ଟଳମଳ ହେଲା ।

୧୯୨୯ ମସିହା ବେଳକୁ ହିନ୍ଦୁସ୍ଥାନୀ ସେବାଦଳ ତରଫରୁ ଠିକ୍ କରାଗଲା ପ୍ରତି ମାସରେ ଥରେ ଜାତୀୟ ପତାକା ଦିବସ ପାଳନ କରାଯିବ । କଲିକତାରେ ନିଷ୍ପତ୍ତି ନିଆଗଲା, ପ୍ରତିମାସର ଶେଷ ରବିବାର ଦିନ ସକାଳ ୮ଟା ବେଳେ ଦେଶସାରା ପତାକା ଉତ୍ତୋଳନ କରାଯିବ । ଏହାକୁ ବିପୁଳ ଜନ ସମର୍ଥନ ମିଳିଲା । ଦେଶର ବିଭିନ୍ନ ସ୍ଥାନରେ ବହୁ ବାସଭବନ ଓ ଓ ମ୍ୟୁନିସିପାଲିଟି ନିୟମିତ ଏହି ସମୟରେ ପତାକା ଉତ୍ତୋଳନ କରୁଥିଲେ ।

୧୯୨୯ରେ ଲାହୋରଠାରେ ଜାତୀୟ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହେଲା । ଡିସେମ୍ବର ୩୧ ତାରିଖ ମଧ୍ୟରାତ୍ରରେ ପଣ୍ଡିତ ଜବାହରଲାଲ୍ ନେହେରୁ ଭାରତ ପାଇଁ ପୂର୍ଣ୍ଣ ସ୍ୱାଧୀନତା ଦାବୀ କଲେ ଓ କଂଗ୍ରେସ ମଣ୍ଡପରେ ଦେଶ ତରଫରୁ ଜାତୀୟ ପତାକା ଉଡାଇଲେ ।

୧୯୩୧ ମସିହା ଅଗଷ୍ଟ ୬,୭ ଓ ୮ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟି ଜାତୀୟ ପତାକାରେ କେତୋଟି ପରିବର୍ତ୍ତନ କରିବାକୁ ପ୍ରସ୍ତାବ କଲେ । ଏହା ଅନୁସାରେ ପତାକାର ରଙ୍ଗ ପଟିଗୁଡ଼ିକ ଅନୁପାତ ଓ ଆକାର ଆଗପରି ହିଁ ରହିଲା । କିନ୍ତୁ ଏହାର କ୍ରମ ବଦଳିଗଲା । ଏଥର ଉପର ଭାଗରେ ରହିଲା ଗୈରିକ, ମଝିରେ ରହିଲା ଧଳା ଓ ତଳେ ସବୁଜ । ଧଳା ପଟିର ମଝିରେ ଗାଢ ନୀଳ ରଙ୍ଗର ଚରଖା ଚିତ୍ର ରହିଲା । ପତାକାର ରଙ୍ଗଗୁଡ଼ିକ ଧର୍ମର ପ୍ରତୀକ ନହୋଇ ଗୁଣର ପ୍ରତୀକ ହେଲା । ଗୈରିକର ଅର୍ଥ ହେଲା ବୀରତ୍ୱ ଓ ତ୍ୟାଗ, ଧଳାର ଅର୍ଥ ଶାନ୍ତି ଓ ସବୁଜ ହେଲା ବିଶ୍ୱାସ ଓ ବୀରତ୍ୱର ସଙ୍କେତ । ଚରଖା ଦ୍ୱାରା ଜନତାର ଆଶା ପୂରଣ ହେଲା । ପତାକାର ଦୈର୍ଘ୍ୟ ଓ ପ୍ରସ୍ଥର ଅନୁପାତ ରହିଲା ତିନିରେ ଦୁଇ । ସ୍ଥିର କରାଗଲା, ପ୍ରତିବର୍ଷ ଅଗଷ୍ଟ ୩୦ ତାରିଖକୁ 'ପତାକା ଦିବସ' ରୂପେ ପାଳନ କରାଯିବ । ୧୯୩୩ ମସିହାରେ ବମ୍ବେରେ କଂଗ୍ରେସର କାର୍ଯ୍ୟକାରୀ କମିଟି ବସିଲା । ଏଥିରେ ଏହି ପ୍ରସ୍ତାବଗୁଡ଼ିକୁ ଗ୍ରହଣ କରାଗଲା । ସେବେଠାରୁ ଏହି ପତାକାଟି ହିଁ ଦେଶ ସ୍ୱାଧୀନ ହେବା ଯାଏଁ ଜାତୀୟ କଂଗ୍ରେସ ଦ୍ୱାରା ବିଭିନ୍ନ କାମରେ ଲାଗୁଥିଲା ।



ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ସୁଭାଷଚନ୍ଦ୍ର ବୋଷ ଭାରତରୁ ପଳାଇ ଯାଇଥିଲେ । ଜର୍ମାନୀର ହିଟ୍‌ଲର୍ ସହ ମିଶି ସେ ଇଂରେଜ ସରକାର ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ କରିଥିଲେ । ୧୯୪୧ ମସିହା ନଭେମ୍ବର ୨ ତାରିଖରେ ବର୍ଲିନ୍ ଠାରେ ସେ ଆଜାଦ୍ ହିନ୍ଦ୍ ଫଉଜ (Free

India Centre) ଉଦ୍‌ଘାଟନ କରିଥିଲେ । ଏହି ଉତ୍ସବରେ ଭାରତର ଜାତୀୟ ସଙ୍ଗୀତ ରୂପେ 'ଜନଗଣ ମନ .....' ଗାନ କରାଯାଇଥିଲା । ଭାରତୀୟମାନଙ୍କ ନିଜ ନିଜ ଭିତରେ ସମ୍ଭାଷଣ ରୂପେ 'ଜୟହିନ୍ଦ୍' ଶବ୍ଦକୁ ଗ୍ରହଣ କରାଯାଇଥିଲା । ଆଜାଦ୍ ହିନ୍ଦ୍ ଫଉଜ ଭାରତର ସେ ସମୟର ପତାକାକୁ ଜାତୀୟ ପତାକା ରୂପେ ସ୍ୱୀକାର କରିଥିଲେ । କେବଳ ସେହି ପତାକାରେ ଥିବା ଚରଖା ଚିହ୍ନ ବଦଳରେ ଲମ୍ଫ ଦେଉଥିବାଏକ ସିଂହର ଛବି ପତାକାରେ ରଖାଯାଇଥିଲା ।

୧୯୪୭ ମସିହା ଜୁନ୍ ମାସ ବେଳକୁ ଦେଶ ସ୍ୱାଧୀନ ହେବାର ସମ୍ଭାବନା ଉଜ୍ଜ୍ୱଳ ହୋଇ ଉଠିଥିଲା । ଜୁନ୍୨୩ ତାରିଖରେ ଶାସନ ବିଧାୟକ ସଭାର ସଭାପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ସ୍ୱାଧୀନ ଭାରତର ଜାତୀୟ ପତାକାକୁ ଚୂଡାନ୍ତ କରିବା ପାଇଁ ଏକ କମିଟି ବସାଇଲେ । କମିଟି ନିଷ୍ପତ୍ତି ନେଲା ଯେ, ପତାକାରେ ଥିବା ଚରଖା ଯୋଗୁଁ ପତାକାର ଉଭୟ ଭାଗ ମଧ୍ୟରେ ମେଳ ରହୁନାହିଁ । ତେଣୁ ଚରଖା ପରି ଅର୍ଥ ବହନ କରୁଥିବା ଆଉ ଏକ ପ୍ରତୀକ ଖୋଜାଗଲା । ଏହି କାମ ପାଇଁ ସରକାରର ଅଶୋକ ସ୍ତମ୍ଭରେ ଥିବା ଧର୍ମଚକ୍ର ଉପଯୁକ୍ତ ମନେ ହେଲା । ତେଣୁ ଏହାକୁ ଚରଖା ଜାଗାରେ ନୀଳ ରଙ୍ଗରେ ଛାପିବା ପାଇଁ ଠିକ୍ କରାଗଲା । ଜୁଲାଇ ୨୨ ତାରିଖରେ ଏହି ପ୍ରସ୍ତାବଟି ଗୃହୀତ ହୋଇଗଲା । ଶାସନ ବିଧାନସଭା ଏହାକୁ ୧୯୪୭ ଅଗଷ୍ଟ ୧୪ତାରିଖରେ,ମଧ୍ୟରାତ୍ରର ବୈଠକରେ ଭାରତର ମହିଳାମାନଙ୍କ ତରଫରୁ ଏହାକୁ ଜାତି ଉଦ୍ଦେଶରେ ଅର୍ପଣ କଲେ । ଏହି ପତାକାରେ ଉଭୟ ଗାନ୍ଧିଜୀ ଓ ଅଶୋକଙ୍କର ଆଦର୍ଶ ପ୍ରତିଫଳିତ ହୋଇଛି । ତେଣୁ ଏହାକୁ ସମସ୍ତେ ଆଦର କରୁଛନ୍ତି ।

## ଭାରତୀୟ ପତାକାର ବିଶେଷତ୍ୱ

ଏହି ପତାକାରେ ୩ଟି ସମାନ୍ତରାଳ ଓ ସମାନ ଆକାରର ପଟି ଥିଲା । ଲାଲ୍ ରଙ୍ଗଟି ହିନ୍ଦୁ ରଙ୍ଗର ପ୍ରତୀକ ଥିଲା । ସବୁଜ ମୁସଲମାନ ଓ ଧଳା ରଙ୍ଗଟି ସଂଖ୍ୟାଲଘୁ ସମ୍ପ୍ରଦାୟକୁ ସୂଚାଉଥିଲା । ଗାନ୍ଧିଜୀ ଏଥିରେ ଧଳା ରଙ୍ଗକୁ ଯୋଡିବା ପଛରେ ଏକ ଦୃଢ ବିଚାର ରହିଥିଲା । ଭାରତରେ



ଜାତିପ୍ରଥାର କୁପରିଣାମ ଯୋଗୁଁ ସଂଖ୍ୟାଲଘୁ ଲୋକମାନଙ୍କୁ ସବୁବେଳେ ସମାଜରେ ତଳୁଆ ଭାବରେ ବିଚାର କରାଯାଉଥିଲା । ସେମାନଙ୍କ ସମ୍ମାନ ଓ ମର୍ଯ୍ୟାଦା ପାଇଁ ଗାନ୍ଧିଜୀ ସେମାନଙ୍କୁ ହରିଜନ ନାମ ଦେଇଥିଲେ । ଏହି ଧଳା ରଙ୍ଗ ମାଧ୍ୟମରେ ସେମାନଙ୍କର ମଙ୍ଗଳ ବିଧାନ ପାଇଁ ଏହି ଦେଶ ଯତ୍ନବାନ ହେଉ ବୋଲି ସେ ଦାବୀ କରିଥିଲେ । ସବୁ ଧର୍ମ ଓ ଜାତିକୁ ଏକା ମର୍ଯ୍ୟାଦା ମିଳିବା ଉଦ୍ଦେଶ୍ୟରେ ତିନୋଟି ଯାକ ରଙ୍ଗକୁ ଏକା ଅନୁପାତରେ ଜାଗା ମିଳିଥିଲା । ମଝିରେ ରଖାଯାଇଥିବା ଚରଖା ଭାରତୀୟ ଶିଳ୍ପର ପ୍ରତୀକ ଥିଲା । ଏଥିରୁ ସୂଚନା ମିଳୁଥିଲା ଯେ କଂଗ୍ରେସ ଅନୁଷ୍ଠାନଟି ସାଧାରଣ ଲୋକଙ୍କର ଅନୁଷ୍ଠାନ ହୋଇ ରହିବ ।

୧୯୨୧ ମସିହାରେ କଂଗ୍ରେସ ଅଧିବେଶନ ବେଳେ ଏହି ପତାକାକୁ ଉତ୍ତୋଳନ କରାଗଲା । ଏହାପରଠୁ ଏହା ସ୍ୱାଧୀନତା ସଂଗ୍ରାମୀମାନଙ୍କର ଆଶା, ପ୍ରେରଣା ଓ ଏକତାର ପ୍ରତୀକ ବନିଗଲା । ଇଂରେଜ ସରକାର ସବୁ ଜାଗାରେ ଏହ ପତାକାକୁ ଖସାଇଦେବା ପାଇଁ ଅନେକ ଆକ୍ରମଣ ଚଳାଇଥାଏ । ଭାରତୀୟମାନେ ବି ଜିଦ୍ ଓ ସ୍ୱାଭିମାନର ସହ ଏହାକୁ ଉଡାଇବା ପାଇଁ କେତେ ରକମର ଉଦ୍ୟମ ଜାରି ରଖିଥିଲେ । ଏପରି ଏକ ମୁହାଁମୁହିଁ ହେବା ଘଟଣାର ନମୁନା ହେଉଛି ୧୯୨୩ ମସିହାର ପତାକା ସତ୍ୟାଗ୍ରହ ।

## ନାଗପୁର ପତାକା ସତ୍ୟାଗ୍ରହ

୧୯୨୩ ମସିହା ବେଳକୁ ଜାତୀୟ ପତାକା ପ୍ରତି ଲୋକଙ୍କର ଆକର୍ଷଣ ବଢିଯାଇଥାଏ । ଇଂରେଜ ସରକାରଙ୍କ ପତାକା ପ୍ରୀତି ଓ ଅନ୍ୟମାନଙ୍କୁ ବାଧ୍ୟତାମୂଳକ ଭାବେ ତାଙ୍କ ପତାକା ନିକଟରେ ମୁଣ୍ଡ ନୁଆଁଇବା ପାଇଁ ଚଳାଇଥିବା ପ୍ରୟାସ ଭାରତୀୟମାନଙ୍କୁ ଅଧିକ ଉତ୍କ୍ଷିପ୍ତ କରିଥିଲା ଓ ସେମାନଙ୍କ ମଧ୍ୟରେ ସ୍ୱାଭିମାନକୁ ଜାଗି ଦେଇଥିଲା । ଭାରତୀୟମାନେ ବି ତାଙ୍କୁ ବିରୋଧ କରି ନିଜ ପତାକାକୁ ଉଡାଇବା ପାଇଁ ବାହାରିଲେ । ନାଗପୁରରେ ମେ’ ପହିଲା ଦିନ ଏପରି ଏକ ଘଟଣା ଘଟିଲା । ନିଜର ସ୍ୱାଧୀନତା ଦାବୀ କରି କଂଗ୍ରେସ୍ କର୍ମୀମାନେ ଜାତୀୟ ପତକା ଉଡାଇ ମୁଖ୍ୟ ରାସ୍ତା ଉପରେ ପଦଯାତ୍ରା କଲେ । ତ୍ରିରଙ୍ଗା ପତାକାକୁ ଦେଖିଲେ ତ ଇଂରେଜମାନଙ୍କ ମୁଣ୍ଡ ଗରମ ହୋଇଯାଉଥିଲା । ତେଣୁ ଏହି ଶୋଭାଯାତ୍ରାକୁ ବିଫଳ କରିବା ପାଇଁ ସେମାନେ ୧୪୪ ଧାରା ଜାରି କଲେ ଓ ଏହାକୁ ବାଧା ଦେଲେ । କଂଗ୍ରେସ କର୍ମୀମାନେ ଯୁକ୍ତି କଲେ, ନିଜର ପତାକା ଧରି ପଦଯାତ୍ରା କରିବା ପାଇଁ ତାଙ୍କର ଅଧିକାର ଅଛି । କିନ୍ତୁ ପୋଲିସ୍ ଶୁଣିଲା ନାହିଁ । ସମସ୍ତଙ୍କୁ ଗିରଫ କରି ଜେଲକୁ ପଠାଇ ଦେଲା । ଏହି ଘଟଣାରେ ଲୋକମାନେ ଆହୁରି ରାଗିଗଲେ । ତାଙ୍କର ଏହି ମୌଳିକ ସ୍ୱାଧୀନତାକୁ ବାଧା ଦେଇଥିବାରୁ ସେମାନେ ଆହୁରି ବ୍ୟାପକ ଭାବରେ ସତ୍ୟାଗ୍ରହ କରିବା ପାଇଁ ସଂଗଠିତ ହେଲେ ।



ଜୁଲାଇ ୧୮ ତାରିଖକୁ 'ପତାକା ଦିବସ' ରୂପେ ପାଳନ କରିବାକୁ ନିଷ୍ପତ୍ତି ନିଆଗଲା । ଜାତୀୟ କଂଗ୍ରେସ ଏହାକୁ ପୂର୍ଣ ସମର୍ଥନ ଜଣାଇଲା ଓ ଏହାକୁ ଦେଶସାରା ପାଳନ କରିବାକୁ ପ୍ରସ୍ତୁତି ଚାଲିଲା । ଏହା ମଧ୍ୟରେ ସ୍ୱାଧୀନତା ସଂଗ୍ରାମୀ ଯମୁନାଲାଲ୍ ବଜାଜଙ୍କୁ ସରକାର ଗିରଫ କଲେ ଓ ତାଙ୍କ ଉପରେ ତିନି ହଜାର ଟଙ୍କା ଜୋରିମାନା ଜାରି କଲେ । କିନ୍ତୁ ଯମୁନାଲାଲ୍ ଏହି ଅର୍ଥ ଦେବା ପାଇଁ ରାଜି ହେଲେ ନାହିଁ । ଫଳରେ ସରକାର ତାଙ୍କ ମୋଟର ଗାଡିଟିକୁ ଜବତ କଲେ । ଏହାକୁ ନିଲାମ କଲେ । କିନ୍ତୁ ନାଗପୁର ଅଞ୍ଚଳରେ ଏହାକୁ କିଣିବା ପାଇଁ କେହି ବି ରାଜି ହେଲେ ନାହିଁ । ତଥାପି ସରକାର ଜିଦ୍‌ରେ ଏହାକୁ କାଥିଆବାଡ୍ ଜିଲ୍ଲାରେ ନେଇ ବିକ୍ରି କରି ଦେଲେ ।

ସରକାରଙ୍କର ଏପରି ଏକଛତ୍ରବାଦ ଭାରତୀୟ ଲୋକଙ୍କୁ ଅଧିକ ରାଗ ଯୋଗାଇଲା । ଏହାପରେ ସତ୍ୟାଗ୍ରହ ଅଧିକ ତୀବ୍ର ରୂପ ଧାରଣ କଲା । ଭାରତର ବିଭିନ୍ନ ସ୍ଥାନରୁ ସତ୍ୟାଗ୍ରହୀମାନେ ଆସି ନାଗପୁରଠାରେ ମିଳିତ ହେଲେ । ଏହି 'ପତାକା ଦିବସ' କାର୍ଯ୍ୟକ୍ରମକୁ ପରିଚାଳନା କଲେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ । ସରକାର ବାରମ୍ବାର ଘୋଷଣା କଲେ - ସରକାରଙ୍କ ଅନୁମତି ନ ନେଇ ଏପରି କୌଣସି ଶୋଭାଯାତ୍ରା ଯାଇପାରିବ ନାହିଁ । କିନ୍ତୁ ସତ୍ୟାଗ୍ରହୀମାନେ ଦୃଢତାର ସହ କହିଲେ, ଯାହା ହେଲେ ବି ସେମାନେ ପତାକା ଶୋଭାଯାତ୍ରା କରିବେ ହିଁ କରିବେ । ଏହା ତାଙ୍କର ଅଧିକାର । ବେଳକୁ ବେଳ ଏହି ସତ୍ୟାଗ୍ରହ ପ୍ରତି ଦେଶସାରା ଲୋକ ଅଧିକରୁ ଅଧିକ ସମର୍ଥନ ଜଣାଇଲେ ।

ଶେଷରେ ସରକାରଙ୍କ ପାଇଁ ଆଉ କୌଣସି ବାଟ ରହିଲା ନାହିଁ । ସେମାନେ ନିଷେଧାଜ୍ଞା ଜାରି କଲେ । କିନ୍ତୁ ସର୍ଦ୍ଦାର ପଟେଲଙ୍କ ନେତୃତ୍ୱରେ ଜୁଲାଇ ୧୮ତାରିଖରେ ସତ୍ୟାଗ୍ରହୀମାନେ ବିନା ବାଧାରେ ପତାକା ଶୋଭାଯାତ୍ରା କଲେ । ଏହାକୁ ସମର୍ଥନ ଜଣାଇ ଦେଶସାରା ସେଦିନ ପତାକା ଦିବସ ପାଳନ କରାଯାଇଥିଲା । ପତାକା ପ୍ରତି ଲୋକଙ୍କର ସମ୍ମାନ ଓ ଆଦର କିପରି ତୀବ୍ର ଭାବେ ବଢି ଚାଲିଥିଲା, ଏହା ତାର ଏକ ଉଦାହାରଣ ।

## ତଥାପି ତ୍ରିରଙ୍ଗା ପତାକା ଉଡିଲା ।

ସେହି ସମୟରେ ଦେଶର ବିଭିନ୍ନ ଗୁରୁତ୍ୱପୂର୍ଣ ଜାଗାରେ ଇଂରେଜମାନଙ୍କ ପତାକା 'ୟୁନିଅନ୍ ଜାକ୍' ଉଡୁଥାଏ । ଏହା ଭାରତୀୟମାନଙ୍କ ପାଇଁ ଅପମାନଜନକ ଥିଲା । ବିଭିନ୍ନ ଜାଗାରେ ତ୍ରିରଙ୍ଗା ପତାକା ମୁଣ୍ଡ ଟେକୁଥାଏ । ଏହାକୁ ଦମନ କରିବା ପାଇଁ ଗୋରାଙ୍କ ପୋଲିସ୍‌ମାନେ ଚଞ୍ଚଳ ହୋଇ ଉଠିଥାନ୍ତି । ସେମାନେ ଲାଠିମାଡ, ଗୁଳିଚାଳନା ଆଦି ଦ୍ୱାରା ଲୋକମାନଙ୍କୁ ଭୟଭୀତ କରାଇ ପତାକା ଛଡାଇ ନେଉଥାନ୍ତି ବା ଏହାକୁ ନଷ୍ଟ କରି ଦେଉଥାନ୍ତି ।

ଏଲାହାବାଦରେ ଏପରି ଗୋଟିଏ ସାହସିକ ଘଟଣା ଘଟିଥିଲା । ଏହାର ବିଭିନ୍ନ ଜାଗା ପରି କ୍ଲକ୍‌ଟାୱାର୍ ଉପରେ ବି 'ୟୁନିଅନ୍ ଜାକ' ପତାକା ଉଡୁଥାଏ । କଂଗ୍ରେସ କର୍ମୀମାନେ ଏସବୁ ଜାଗାରୁ ବିଦେଶୀ ପତାକାକୁ ବାହାର କରିଆଣି ସ୍ୱଦେଶୀ ତ୍ରିରଙ୍ଗାକୁ ଉଡାଇବାକୁ ଚେଷ୍ଟା ଚଳାଉଥାନ୍ତି । ଏଥିପାଇଁ ଅନେକ ଜାଗାରେ ସେମାନଙ୍କୁ ନିର୍ଘୃମ ମାଡ ଓ ଜେଲ୍ ଦଣ୍ଡ ସହିବାକୁ

ପଡୁଥାଏ । କ୍ଲକ୍‌ଟାୱାର୍‌ର ବିଦେଶୀ ପତାକାକୁ ହଟାଇବା ପାଇଁ ଯୋଜନା ଚାଲିଲା । କିନ୍ତୁ ପୋଲିସ୍ କୌଣସି ମତେ ଏହି ଯୋଜନାର ସୂଚନା ପାଇଗଲା । ସେମାନେ ସତର୍କ ହୋଇଗଲେ । ଟାୱାର୍ ଚାରିପଟେ ଲାଠି, ବନ୍ଧୁକ ଧରି ଘେରିଗଲେ ।

ଏଥିରେ ଗୋଟିଏ ଅସୁବିଧା ଥିଲା । ଏହା ଏକ ଆକର୍ଷଣୀୟ ପର୍ଯ୍ୟଟନ କେନ୍ଦ୍ର ହୋଇଥିବାରୁ ଏଠାକୁ ଅନେକ ଲୋକ ଆସୁଥିଲେ । ସେମାନଙ୍କ ଆସିବାକୁ ତ ବନ୍ଦ କରିହେବ ନାହିଁ । ତେଣୁ ଲୋକ ଯାତାୟାତ ଜାରି ରହିଲା । ଯେ କେହି କଂଗ୍ରେସ କର୍ମୀ ସେହି ଇଲାକାରେ ଦେଖାଦେଲେ ତାଙ୍କୁ ଚଟାପଟ୍ ଗିରଫ କରାଗଲା । ଯାଞ୍ଚକାମ କଡାକଡି ଭାବେ ଚାଲିଲା । ଅନେକ କଂଗ୍ରେସ କର୍ମୀ ଚେଷ୍ଟା କରି ବିଫଳ ହେଲେ । ସମସ୍ତଙ୍କ ଚିନ୍ତା ଓ ରାଗ ବଢୁଥାଏ ।



ଦିନେ କ୍ଲକ୍‌ଟାୱାର୍ ସାମନାରେ ଅନେକ ଗାଡି ପରି ଗୋଟିଏ ଘୋଡା ଗାଡି ଅଟକିଲା । ପୋଲିସ୍‌ମାନେ ସାଙ୍ଗେସାଙ୍ଗେ ଯାଞ୍ଚ ଆରମ୍ଭ କରିଦେଲେ । ଗାଡିରେ ଜଣେ ବୁର୍ଖାପିନ୍ଧା ମହିଳା ବସିଥିଲେ । ପୋଲିସ୍‌ମାନେ ତାଙ୍କୁ ପର୍ଯ୍ୟଟକ ଭାବି ଛାଡିଦେଲେ । ମହିଳା ବି ଚୁପ୍‌ଚାପ୍ ଟାୱାର୍ ଭିତରକୁ ଚାଲିଲେ । କିନ୍ତୁ କିଛି ସମୟ ପରର ଘଟଣାଟି ଦେଖି ପୋଲିସ୍‌ଙ୍କ ମଧ୍ୟରେ ଚାଞ୍ଚଲ୍ୟ ଖେଳିଗଲା । ଟାୱାର୍ ଉପରେ 'ୟୁନିଅନ୍ ଜାକ୍' ବଦଳରେ ଭାରତର 'ତ୍ରିରଙ୍ଗା ପତାକା' ଉଡୁଥାଏ । ଏହାକୁ ବା ଗୋରାଲୋକମାନେ ସହନ୍ତେ କିପରି ? ସେମାନେ ସାଙ୍ଗେ ସାଙ୍ଗେ ଛାତ ଉପରକୁ ଦଉଡିଗଲେ । ଅଳ୍ପ କିଛି ମିନଟ୍ ମଧ୍ୟରେ ସେମାନେ ପୁଣି ପତାକାକୁ ବଦଳାଇ ଦେଲେ ।

ରାଗରେ ସେମାନେ ଏଣେତେଣେ ଖୋଜି ପକାଉଥାନ୍ତି । କିଏ ତାଙ୍କର ଛଞ୍ଚାଣ ଆଖି ଆଗରୁ ଖସିଯାଇ ଏପରି ଅସମ୍ଭବ କାମ କରିଦେଲା ? ଖୋଜି ଖୋଜି କରି ସେମାନେ କାହାକୁ ପାଇଲେ ନାହିଁ । କିଛି ସମୟ ପରେ ଅଳ୍ପ ଉଚ୍ଚତା ବିଶିଷ୍ଟ ଜଣେ ଖଦଡ ପିନ୍ଧା ଯୁବକ ତାଙ୍କ ଆଗରେ ଘୋଷଣା କଲେ, ସେ ହିଁ ପତାକା ଉଡାଇଥିଲେ । ସେ ଯଥେଷ୍ଟ ଦୃଢତା ଓ ସଫଳତାର ଆନନ୍ଦ ସହ ଏହା ପ୍ରକାଶ କରୁଥାନ୍ତି ।

ସଙ୍ଗେ ସଙ୍ଗେ ଗିରଫ କରି ତାଙ୍କୁ ଜେଲ୍‌କୁ ପଠାଇ ଦିଆଗଲା । ଏହି ଅଳ୍ପ ସମୟର ଆଇନ୍ ଅବଜ୍ଞା ଯୋଗୁଁ ତାଙ୍କୁ ୬ମାସ ଜେଲ୍‌ଦଣ୍ଡ ଭୋଗିବାକୁ ପଡ଼ିଲା । ତାଙ୍କର ଅନେକ ସାଥି ଏଥିପାଇଁ ଲାଠିମାଡ ବି ଖାଇଲେ । ଏହି ଦୁଃସାହସୀ ଓ ବୁଦ୍ଧିମାନ ଯୁବକ ଥିଲେ ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ଲାଲ୍ ବାହାଦୁର ଶାସ୍ତ୍ରୀ ।

## ଓଡ଼ିଶାରେ ପତାକା ସଂଗ୍ରାମ

ଓଡ଼ିଶାର ଏହି ଘଟଣାଟି ଯଥେଷ୍ଟ ଗୌରବମୟ ଅଟେ । ପତାକାର ଟେକ ପାଇଁ ଓଡ଼ିଆ ସ୍ୱାଧୀନତା ସଂଗ୍ରାମୀମାନେ ସେହିଥର ସିଧାସଳଖ ଗୋରାଙ୍କର ହତିଆରର ସାମନା କରିଥିଲେ । ୧୯୩୧ -୩୨ ମସିହାବେଳେ ଏହି ଘଟଣାଟି ଘଟିଥିଲା । ସେତେବେଳେ ଗୋରାମାନେ ଭାରତୀୟ ପତାକାକୁ ଜମା ଉଡ଼ିବାକୁ ଦେଉ ନଥାନ୍ତି । ଲୋକଙ୍କୁ ମାରପିଟ୍ କରିବା ସାଙ୍ଗକୁ ସେମାନେ ଅନ୍ୟାନ୍ୟ ଅସୁବିଧା ସୃଷ୍ଟି କରୁଥାନ୍ତି । କଟକରେ ଥିବା ସ୍ୱରାଜ୍ୟ ଆଶ୍ରମରେ ସେମାନେ ଭାରତୀୟ ପାତାକ ଉଡାଇବାକୁ ଦେଉ ନଥାନ୍ତି । କାଳେ ଏଥିପାଇଁ ଉଦ୍ୟମ ହେବ ସନ୍ଦେହ କରି ସେମାନେ ପତାକା ସ୍ତମ୍ଭଟିକୁ ଅଧାରୁ ଭାଙ୍ଗିଦେଲେ । ଏହା ଲୋକଙ୍କ ପାଇଁ ଅପମାନଜନକ ହେଲା । କଂଗ୍ରେସକର୍ମୀମାନେ ସବୁ କଟକଣାକୁ ଟପି ଆଶ୍ରମ ପରିସରରେ ପତାକା ଉଡାଇବା ପାଇଁ ପ୍ରସ୍ତୁତ ହେଲା ।

ପୋଲିସ୍ ଏହି ଘଟଣାର ସୁରାକ ପାଇଗଲା । ଏହାକୁ ଦମନ କରିବା ପାଇଁ ଦଳବଳ ତିଆର ହୋଇଗଲେ । ସେ ସମୟରେ କଟକରେ ଜଣେ ଦୁର୍ଦ୍ଦାନ୍ତ ଗୋରା ଏସ୍.ପି. ରହୁଥିଲେ । ତାଙ୍କ ନାଁ ଲେନ୍ । ସେ ସତ୍ୟାଗ୍ରହୀମାନଙ୍କୁ ବାଧା ଦେବା ପାଇଁ ପହଞ୍ଚିଗଲେ । ତାଙ୍କର ଲାଠି ମୁଣ୍ଡରେ ଗୋଟିଏ ପିତଳ ଗୋବ ଲାଗିଥାଏ ।



ସତ୍ୟାଗ୍ରହୀଙ୍କର ପ୍ରଥମ ଦଳଟି ଜାତୀୟ ପତାକା ଧରି ଆଶ୍ରମ ମଧ୍ୟକୁ ପଶିଲେ । ଲେନ୍ ସେମାନଙ୍କ ପେଟକୁ ପିତଳ ମୁଣ୍ଡରେ ଆଘାତ କରୁଥାନ୍ତି । ସଂଗ୍ରାମୀମାନେ ତଳେ ପଡ଼ିଯାଉଥାନ୍ତି । ଅନ୍ୟ ପୋଲିସ୍‌ମାନେ ତାଙ୍କୁ ଘୋଷାରି ବାହାର କରି ଦେଉଥାଆନ୍ତି । ଏହିପରି ନିର୍ମମ ଆକ୍ରମଣ ସତ୍ତ୍ୱେ ସତ୍ୟାଗ୍ରହୀମାନେ ଦଳପରେ ଦଳ ଭିତରକୁ ଯାଉଥାନ୍ତି । ଚତୁର୍ଥ ଦଳରେ ସଂଗ୍ରାମୀ

ବୈକୁଣ୍ଠନାଥ ମହାନ୍ତି ଥିଲେ । ସେ କୌଶଳ କ୍ରମେ ଲେନ୍‌ଙ୍କ ଆଖି ଆଗରୁ ଖସିଯାଇ କୋଠା ଉପରେ ଚଢି ପତାକା ଉଡାଇବାକୁ ଚେଷ୍ଟା କଲେ । ସେ ହାତରେ ପତାକାଟିଏ ଧରି ଆଗେଇ ଯାଉଥାନ୍ତି । ଏହି ସମୟରେ ସେ ଧରା ପଡିଗଲେ । ଲେନ୍ ରାଗିଯାଇଥାନ୍ତି । ତାଙ୍କ ଆଦେଶରେ ଜଣେ ପୋଲିସ୍ ବୈକୁଣ୍ଠନାଥଙ୍କର ହାତକୁ ବନ୍ଧୁକ ସଙ୍ଗିନରେ ଆଘାତ କଲା । ଛୁରୀଟି ତାଙ୍କ ବାଁ କାଖରେ ଫୁଟି ପିଠିପଟେ ବାହାରି ପଡିଲା । ତଥାପି ସେ ପତାକାଟିକୁ ଜାବୁଡି ଧରିଥାନ୍ତି । ଶେଷରେ ସେ ଅଚେତ ହୋଇଗଲେ । ଦେହ ଭଲ ହେବାକୁ ୩-୪ ମାସ ଲାଗିଥିଲା ।

ସେହିପରି ଆଉ ଏକ ସାହସିକ ଉଦ୍ୟମ କରିଥିଲେ ଓଡିଶାର ପ୍ରଥମ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ । ୧୯୩୭ ମସିହାରେ ପରାଧୀନ ଭାରତରେ ତାଙ୍କରି ନେତୃତ୍ୱରେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ କରାଯାଇଥିଲା । ସେହି ସମୟରେ କୋଠାବାଡି, ସରକାରୀ ଗାଡି ଆଦିରେ 'ୟୁନିଅନ୍ ଜାକ୍' ପତାକା ଉଡିବା ବାଧ୍ୟତାମୂଳକ ଥିଲା । କିନ୍ତୁ ବିଶ୍ୱନାଥବାବୁ ଏହାକୁ ଖାତିର କରୁନଥିଲେ । ତାଙ୍କ ଗାଡି ଉପରେ ଭାରତୀୟ ପତାକା ହିଁ ଉଡୁଥିଲା । ସେ ପୁରୀ ସର୍କିଟ୍ ହାଉସ୍‌ରେ ଥିଲାବେଳେ ବି ସେଠାରେ ଭାରତୀୟ ତ୍ରିରଙ୍ଗା ଉଡୁଥିଲା । ଏଥିଯୋଗୁଁ ଗୋରା ସରକାର ତାଙ୍କ ଉପରେ କ'ଣ ଚାପ ପକାଇଥିବେ, ଏହା କେଉଁଠାରେ ଲେଖାନାହିଁ । କିନ୍ତୁ ତାଙ୍କର ଏହି ଉଦ୍ୟମଟି ନିଶ୍ଚୟ ଏକ ସାହସିକ ପଦକ୍ଷେପ ଥିଲା ।

ଜାତୀୟ ପତାକାକୁ ନେଇ ଓଡିଶାର ଆଉ ଏକ କାହାଣୀ ବି ଆମେ ଜାଣିବା କଥା । ୧୯୩୨ ମସିହାରେ ସ୍ୱାଧୀନତା ସଂଗ୍ରାମୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଓ ତାଙ୍କ ସାଥିମାନଙ୍କ ସହ ଏହି ଘଟଣାଟି ଘଟିଥିଲା । ସେ ଓ ତାଙ୍କର ସାଥି ବନ୍ଦୀମାନଙ୍କ ସଂଖ୍ୟା ଥିଲା ପ୍ରାୟ ଷାଠିଏ । ସେମାନଙ୍କୁ ରାଜନୈତିକ ବନ୍ଦୀ ରୂପେ ଓଡିଶାରୁ ବିହାରକୁ ନିଆଯାଉଥାଏ । କଟକ ଜେଲ୍‌ରୁ ପାଟନା ଜେଲ୍‌କୁ ସ୍ଥାନାନ୍ତର । ଗାଡି ଯାଇ କିଉଲ୍ ଷ୍ଟେସନ୍‌ରେ ଲାଗିଲା । ପ୍ଲାଟଫର୍ମରେ ଦଳେ ଗୋରା ସୈନ୍ୟ ମଦପିଇ ମଉଜ କରୁଥାନ୍ତି । ତାଙ୍କୁ ଶୁଣାଇ ବନ୍ଦୀମାନେ ପାଟି କଲେ, 'ଅପ୍ ଅପ୍ ନାସ୍‌ନାଲ୍ ଫ୍ଲାଗ୍, ଡାଉନ୍ ଡାଉନ୍ ୟୁନିଅନ୍ ଜାକ୍ ।'



ନିଜ ପତାକା ପତି କଳା ଲୋକଙ୍କର ଏପରି ମନ୍ତବ୍ୟ ଶୁଣି ଗୋରା ସୈନ୍ୟଙ୍କ ମୁଣ୍ଡକୁ ରକ୍ତ ଉଠିଗଲା । ସେମାନେ ରାଗି ବନ୍ଦୀମାନଙ୍କ ଉପରକୁ ମଦବୋତଲ ଆଦି ଫିଙ୍ଗିଲେ ଓ ଅଭଦ୍ର ଗାଳି ଦେଲେ । ଏହି ସମୟରେ ବନ୍ଦୀମାନଙ୍କ ସହିତ ଭାରପ୍ରାପ୍ତ ପୋଲିସ୍ ଅଫିସର ରୂପେ ଗୋକୁଳାନନ୍ଦ ମହାନ୍ତି ଯାଉଥିଲେ । ସେ ଗୋରାମାନଙ୍କୁ ଉତ୍ତେଜିତ ସ୍ୱରରେ କହିଲେ, 'ଏମାନେ ରାଜନୈତିକ ବନ୍ଦୀ । ନିଜ ଜନ୍ମଭୂମିକୁ ମୁକ୍ତ କରିବା ପାଇଁ ଲଢୁଛନ୍ତି । ଏମାନଙ୍କ ପ୍ରତି ଏପରି ଖରାପ ଆଚରଣକୁ ମୁଁ କ୍ଷମା ଦେବି ନାହିଁ ।' ଏହି ମନ୍ତବ୍ୟଟି ଶୁଣି ଗୋରାମାନେ ଥଣ୍ଡା ପଡିଗଲେ । ନିଜର ଖରାପ ଆଚରଣ ପାଇଁ ସେମାନେ କ୍ଷମା ମାଗିଲେ ଓ ଜାଗାଟି ଛାଡି ଅନ୍ୟ ଆଡେ ଚାଲିଗଲେ ।

## ଶହୀଦ ଲକ୍ଷ୍ମଣ ନାୟକଙ୍କ ପତାକା ବିପ୍ଳବ

ଓଡିଶାର ବୀରପୁତ୍ର ଲକ୍ଷ୍ମଣ ନାୟକ ଇଂରେଜମାନଙ୍କ ବିରୁଦ୍ଧାଚରଣ କରି ଫାଶୀ ପାଇଥିଲେ । ବ୍ରହ୍ମପୁରର ଜେଲ୍‌ରେ ତାଙ୍କୁ ଫାଶୀ ଦିଆଯାଇଥିଲା । ଏହି ଘଟଣା ଶୁଣିଲେ ପ୍ରତ୍ୟେକ ଓଡିଆ ମନରେ ରାଗ ଆସେ । କିନ୍ତୁ ଆଉ ଘଟଣାଟିକୁ ଅନେକ ସାଥି ଜାଣନ୍ତି ନାହିଁ । ଜାତୀୟ ପତାକାର ମାନ ମର୍ଯ୍ୟାଦା ପାଇଁ ହିଁ ବିପ୍ଳବୀ ଲକ୍ଷ୍ମଣ ନାୟକ ଶହୀଦ ହୋଇଥିଲେ ।

ସେଦିନ ଥିଲା ୧୯୪୨ ମସିହା ଅଗଷ୍ଟ ୨୧ ତାରିଖ । ଦେଶରେ ସ୍ୱାଧୀନତା ଆନ୍ଦୋଳନ ପୂରା ତେଜି ଉଠିଥାଏ । ଗାନ୍ଧିଜୀଙ୍କ ଆହ୍ୱାନରେ ଲୋକେ ଦେଶର ସ୍ୱାଧୀନତା ପାଇଁ ମରିବା ପାଇଁ ବି ପ୍ରସ୍ତୁତ ହୋଇ ଯାଇଥାନ୍ତି । ଏହି ସରଗରମ ବାତାବରଣ ଓଡିଶାରେ ମଧ୍ୟ ଦେଖା ଦେଇଥିଲା । ସେ ଦିନ ଲକ୍ଷ୍ମଣ ନାୟକ ଗୋଟିଏ ସଭା ଡକାଇ ଥାନ୍ତି । କୋରାପୁଟ ଜିଲ୍ଲାର ମାତିଲି ନାମକ ଏକ ହାଟରେ ସଭା ଚାଲିଲା । ଆଖପାଖ ଗାଁରୁ ଶହ ଶହ ଲୋକ ପହଞ୍ଚିଥାନ୍ତି । ହାତରେ ତ୍ରିରଙ୍ଗା ପତାକା ଧରି ସେମାନେ ଇଂରେଜ ଶାସନର ପ୍ରତିବାଦ କରୁଥାନ୍ତି ।

ଥାନା ଏଠାରୁ ବେଶୀ ଦୂର ନଥିଲା । କମ୍ ସମୟ ମଧ୍ୟରେ ପୋଲିସ୍ ସେଠାରେ ପହଞ୍ଚିଗଲେ । ସଭାର ପୁରୋଧା ଲକ୍ଷ୍ମଣ ନାୟକଙ୍କୁ ଗିରଫ କରି ସେମାନେ ଥାନାକୁ ଚାଲିଲେ । ଲୋକମାନେ ଏହାର ପ୍ରତିବାଦ କଲେ । ପ୍ରାୟ ଦୁଇ ହଜାର ଲୋକ ଆଦିବାସୀ ନେତାଙ୍କ ପଛେ ପଛେ ଥାନା ଆଡକୁ ଚାଲିଲେ । 'ବନ୍ଦେ ମାତରମ୍' ସ୍ୱରରେ ଇଲାକାଟି କମ୍ପିଯାଉଥାଏ । କେତେ ଜଣ କର୍ମୀ ପୋଲିସ୍‌ର ଏହି ଆଚରଣର ବିରୋଧ କରିବାକୁ ବାହାରି ପଡିଲେ । ସେମାନେ ପତାକା ଧରି ଚାଲିଲେ । ଥାନା ଉପରେ ପତାକା ଉଡାଇବା ପାଇଁ ଚେଷ୍ଟା କଲେ । ଏତେ ଲୋକଙ୍କୁ ନିୟନ୍ତ୍ରଣ କରିବା ପାଇଁ ପୋଲିସ୍ ପାଇଁ କିଛି ବାଟ ନଥିଲା । ସେମାନେ ତାଙ୍କ ନେତାଙ୍କୁ ଆକ୍ରମଣ କଲେ । ଭିତରକୁ ଭିଡିନେଇ ଲକ୍ଷ୍ମଣ ନାୟକଙ୍କୁ ସେମାନେ ମାଡି ବସିଲେ ଓ ତାଙ୍କ ନିଶରେ ନିଆଁ ଲଗାଇ ଦେଲେ ।

ଲୋକ ଏହା ଦେଖି ଉତ୍ତ୍ୟକ୍ତ ହୋଇଉଠିଲେ । ଏମାନଙ୍କୁ ଘଉଡାଇବା ପାଇଁ ପୋଲିସ୍ ଲାଠି ଚଳାଇଲେ । ଗୁଳି ବି ଚଳାଇଲେ । ଏଥିରେ ଅନେକ ଲୋକ ମୃତାହତ ହେଲେ । ତେଣେ ଧାଁ ଦଉଡ ସମୟରେ ବଳାଚକଟାରେ ଜଣେ ବନରକ୍ଷୀ ପ୍ରାଣ ହରାଇଲେ ।



ପୋଲିସ୍ ପୁଣି ଲକ୍ଷ୍ମଣ ନାୟକଙ୍କ ଉପରେ ଆଖି ପକାଇଲା । ସେମାନେ ତାଙ୍କୁ ଧରିନେଇ ସଙ୍ଗିନ୍‌ରେ ଆଘାତ କଲେ । ମୁହଁରେ ସଙ୍ଗିନ ବାଜିବାରୁ ଲକ୍ଷ୍ମଣ ନାୟକ ମୂର୍ଚ୍ଛା ହୋଇଗଲେ । ପୋଲିସ୍‌ମାନେ ଭାବିଲେ ସେ ମରିଗଲେ । ତାଙ୍କୁ ଘୋଷାରି ଘୋଷାରି ନେଇ ସେମାନେ କୌଣସି ନଳାରେ ଫୋପାଡ଼ି ଦେଲେ । ଅନେକ ସମୟ ବେହୋସ ଅବସ୍ଥାରେ ପଡ଼ିଲା ପରେ ଥଣ୍ଡା ପବନ ବାଜି ଲକ୍ଷ୍ମଣଙ୍କର ଚେତା ଫେରିଲା । ରକ୍ତ ଜୁଡୁବୁଡୁ ଅବସ୍ଥାରେ ଅନ୍ଧାରରେ ବାଟ ଖୋଜି ଖୋଜି ସେ ଜୟପୁରରେ ପହଞ୍ଚିଲେ । କିଛି ଦିନର ଚିକିତ୍ସା ପରେ ସେ ସୁସ୍ଥ ହେଲେ ।

କିନ୍ତୁ ଅବସ୍ଥା ଅତି ସାଂଘାତିକ ଅବସ୍ଥାରେ ପହଞ୍ଚିଗଲା । ପୋଲିସ ତାଙ୍କ ନାମରେ ଏକ ମକଦ୍ଦମା ଦାଏର୍ କଲା । ବନରକ୍ଷୀଟିର ମୃତ୍ୟୁ ପାଇଁ ତାଙ୍କୁ ଦାୟୀ କରାଗଲା । ହାଇକୋର୍ଟ୍ ଘୋଷଣା କଲା, ‘ସେ ଦିନର ସଭାବେଳେ ଲକ୍ଷ୍ମଣ ନାୟକ ହାତରେ ଜାତୀୟ ପତାକା ଧରି ଲୋକଙ୍କୁ ଇଂରେଜଙ୍କ ବିରୁଦ୍ଧରେ ମତାଉଥିଲେ । ସେହି ସମୟରେ ହୋଇଥିବା ଦଳାଚକଟାରେ ବନରକ୍ଷୀର ମୃତ୍ୟୁ ହେଲା । ଏଥିପାଇଁ ଲକ୍ଷ୍ମଣ ନାୟକ ଦାୟୀ । ତାଙ୍କୁ ଫାଶୀ ଦିଆଯିବ ।’ ସତକୁ ସତ ୧୯୪୩ ମସିହା ମାର୍ଚ୍ଚ ମାସ ୨୯ ତାରିଖ ସକାଳେ ଏହି ବିପ୍ଳବୀ ଆଦିବାସୀ ନେତାଙ୍କୁ ବ୍ରହ୍ମପୁର ଜେଲ୍‌ରେ ଫାଶି ଦିଆଗଲା ।

ଘଟଣାଟି କେତେ ଅନ୍ୟାୟ ଓ ନିର୍ମମ !! ଜାତୀୟ ପତାକା ଓ ଦେଶର ଟେକ ପାଇଁ ବିନା ଭୁଲରେ ଦେଶର ଏକ ବଳିଷ୍ଠ ବ୍ୟକ୍ତିତ୍ୱ ପ୍ରାଣବଳୀ ଦେଇଦେଲେ । ଆମ ପତାକା ଏହାର ସାକ୍ଷୀ ।

## ବ୍ରହ୍ମପୁର ଜେଲ୍‌ରେ ଆଉ ଏକ ବିପ୍ଳବ

ଲକ୍ଷ୍ମଣ ନାୟକ ବ୍ରହ୍ମପୁରରେ ବନ୍ଦୀ ଥିବାବେଳେ ତାଙ୍କ ସହିତ ଓଡ଼ିଶାର ଅନେକ ଜଣାଶୁଣା କଂଗ୍ରେସ ନେତା ବି ସେଠାରେ ବନ୍ଦୀ ଥିଲେ । ସେମାନେ ସେ ସମୟର ଆଉ ଏକ ଘଟଣାକୁ ମଧ୍ୟ କହିଥାନ୍ତି । ଲକ୍ଷ୍ମଣ ନାୟକ ଫାଶି ପାଇଲା ପରେ ଏହି ଘଟଣାଟି ଘଟିଥିଲା । ଦିନେ ବନ୍ଦୀମାନେ ଠିକ୍ କଲେ, ଜାନୁଆରୀ ୨୬ ତାରିଖ ଦିନ ଜେଲ୍ ପରିସରରେ ସେମାନେ ଜାତୀୟ ପତାକା ଉତ୍ତୋଳନ କରିବେ !

ସରକାର ଏହାକୁ ବିରୋଧ କଲେ । ସେମାନେ ଜାଣିଥିଲେ ଯେ ବନ୍ଦୀ ନେତାମାନଙ୍କର ଏହି କାମଟିକୁ ଅଟକାଇବା ସହଜ କଥା ନୁହେଁ । ଧମକ ଓ ମାଡ ମାଧ୍ୟମରେ ସେମାନେ ବନ୍ଦୀମାନଙ୍କୁ ଭୟଭୀତ କରାଇ ଦେବାର ମସୁଧା କଲେ । କଲେକ୍ଟର୍ ନିଜେ ସେହିଦିନ ଘଟଣା ସ୍ଥଳରେ ନିଜର ପୋଲିସ୍ ଦଳବଳ ନେଇ ପହଞ୍ଚିଗଲେ । ପୋଲିସ୍‌ଙ୍କ ହାତରେ ଉଭୟ ଲାଠି ଓ ବନ୍ଧୁକ ଥାଏ, ସେମାନେ ନିଜ ନିଜ ଦଳରେ ପ୍ରସ୍ତୁତ ହୋଇ ରହିଥାନ୍ତି । ଆଗରେ ଲାଠିଧାରୀ ପୋଲିସ୍ ଓ ତାଙ୍କ ପଛକୁ ବନ୍ଧୁକଧାରୀ ପୋଲିସ୍ ଥାଆନ୍ତି । ଆଗରେ କଲେକ୍ଟର ବେତ ଧରି ଠିଆ ହୋଇଥାନ୍ତି ।

ପତାକା ଉତ୍ତୋଳନ ସମୟ ପାଖେଇ ଆସିଲା । କଲେକ୍ଟର୍ ଘୋଷଣା କଲେ : 'ଜାତୀୟ ପତାକା ଉଡାଇବା ଏକ ବେଆଇନ କାମ । ସରକାର ଏହାକୁ ଉଡାଇବାକୁ ଦେବେ ନାହିଁ । ଯିଏ ଏହି ଚେଷ୍ଟା କରିବେ, ତାଙ୍କ ଉପରେ ଲାଠିମାଡ ହେବ ।' ତାଙ୍କର ଏହି ମନ୍ତବ୍ୟ ବନ୍ଦୀମାନଙ୍କ ପାଇଁ ଅସହ୍ୟ ଥିଲା । ଏସମୟରେ ବିପ୍ଳବୀ ନବକୃଷ୍ଣ ଚୌଧୁରୀ ଆଗକୁ ବାହାରି ଆସିଲେ । ନିଜ କୁର୍ତ୍ତା ଖୋଲି ଦେଇ ସେ କଲେକ୍ଟରଙ୍କୁ ଆହ୍ୱାନ କଲେ - 'ତୁମେ ପ୍ରଥମେ ମୋତେ ଗୁଳିକର, ତା' ପରେ ଅନ୍ୟମାନଙ୍କ ଉପରେ ଲାଠିମାଡ କରିବ ।'

ନବବାବୁଙ୍କ ଉତ୍ତେଜନା ଓ ଦମ୍ଭ ଦେଖି ସାଥି ବନ୍ଦୀମାନେ ବି ଗରଜି ଉଠିଲେ । ସେମାନେ ପତାକା ଉତ୍ତୋଳନ କରିବାକୁ ବାହାରିଲେ । କିନ୍ତୁ ପୋଲିସ୍ ତାଙ୍କୁ ଛାଡିଲା ନାହିଁ । କଲେକ୍ଟର୍‌ଙ୍କ ନିର୍ଦ୍ଦେଶରେ ସେମାନେ ବନ୍ଦୀଙ୍କ ଉପରୁ ଝପଟି ପଡିଲେ । ସମସ୍ତଙ୍କ ଉପରେ ପ୍ରବଳ ଲାଠିମାଡ ହେଲା । ବନ୍ଦୀଙ୍କ ମଧ୍ୟରୁ ସେଦିନ ୫୮ ଜଣ ଆହତ ହୋଇଯାଇଥିଲେ ।

*ବିଦେଶର ଇତିହାସରୁ .....*

## ବାର୍‌ବାରା ଫ୍ରିଚୀ ଓ ପତାକା

ଆବ୍ରାହମ୍ ଲିଙ୍କନ୍‌ଙ୍କ ସମୟରେ କ୍ରୀତଦାସ ପ୍ରଥାକୁ ନେଇ ଆମେରିକାରେ ବଡ ଝଡ ଉଠିଥିଲା । ଏହାକୁ ଜାରି ରଖାଯିବ ନା ଉଠାଇ ଦିଆଯିବ, ଏହି ପ୍ରଶ୍ନକୁ ନେଇ ଆମେରିକାର ଉତ୍ତରାଞ୍ଚଳ ଓ ଦକ୍ଷିଣାଞ୍ଚଳ ମଧ୍ୟରେ ଗୃହଯୁଦ୍ଧ ଚାଲିଲା । ଏଥିରୁ ଗୋଟିଏ ଯୁଦ୍ଧରେ ଦକ୍ଷିଣାଞ୍ଚଳର ସେନାପତି ଷ୍ଟୋନ୍‌ୱାଲ୍ ଜାକ୍‌ସନ୍ ବିଜୟୀ ହେଲେ । ଏହାପରେ ସେ ଉତ୍ତରାଞ୍ଚଳର ଫ୍ରେଡ୍‌ରିକ ସହରରେ ପ୍ରବେଶ କଲେ । ତାଙ୍କର ସୈନ୍ୟମାନେ ସହରରେ ପଶିବାରୁ ସହରଟିରେ ଆତଙ୍କ ଖେଳିଗଲା । ଲୋକମାନେ ପ୍ରାଣ ବିକଳରେ କିଏ କୁଆଡେ ପଳାଉଥାନ୍ତି ଓ ନିଜ ନିଜ ଘର ଉପରୁ ଜାତୀୟ ପତାକା ବାହାର କରି ନେଉଥାନ୍ତି ।

ସେନାପତି ଏଣେ ବୀରଦର୍ପରେ ସହରର ମୁଖ୍ୟ ରାସ୍ତା ଉପରେ ଆଗେଇ ଚାଲିଥାନ୍ତି । ଏ ସମୟରେ ଗୋଟିଏ ଘରର ଝରକା ଉପରେ ଗୋଟିଏ ପତାକା ଉଡୁଥିବାର ସେ ଦେଖିପାରିଲେ । ସେ ଜଣେ ସୈନିକକୁ ଆଦେଶ ଦେଲେ 'ଚଲାଅ ଗୁଳି ।'



ପତାକାଟି ଆଡକୁ ଗୁଳି ଧାରା ଛୁଟିଲା । ପତାକା ପାଖର ଝରକାର କାଚ ଝଣ ଝଣ ହୋଇ ଗଳି ପଡିଲା । ସୁନ୍ଦର ପତାକାଟି କ୍ଷଣ କେତେଟାରେ ଛିନ୍‌ଭିନ୍ ହୋଇଗଲା । ଏ ସମୟରେ ସେହି ଭଙ୍ଗା ଝରକା ମଧ୍ୟରୁ ବୁଢ଼ୀ ମୁହଁଟିଏ ବାହାରକୁ ବାହାରି ପଡିଲା । ଗୁଳି ଚଳାଇବା ବନ୍ଦ ହୋଇଗଲା । ମୁହଁରେ ଦୁଃଖ, ଚିନ୍ତା ଓ ରାଗ ସହ ପତାକାଟି ହଲାଇ ହଲାଇ ସେ ଥରାକଣ୍ଠରେ ଘୋଷଣା କଲେ, ''ଯଦି ଗୁଳି ଚଳାଇବାକୁ ଚାହୁଁଛ, ତେବେ ପ୍ରଥମେ ମୋ ମୁଣ୍ଡକୁ ଗୁଳି ଚଳାଅ । ଏହା ମୋ ଦେଶର ପତାକା । ମୋ ଆଖି ଆଗରେ ଏହାକୁ ତିଳେ ବି ଅପମାନ ଦେଲେ ମୁଁ ସହି ପାରିବି ନାହିଁ ।''

ନବେ ବର୍ଷର ବୁଢ଼ୀଙ୍କର ମୁହଁରେ କି ଦୃପ୍ତ ନିର୍ଭୀକତା ! ତାଙ୍କର ଏହି ଅପୂର୍ବ ଦେଶପ୍ରୀତି ଦେଖି ସେନାପତି ଷ୍ଟୋନ୍‌ୱାଲ ଅଭିଭୂତ ହୋଇ ପଡିଲେ । କହିଲେ, 'ଥାଉ । ଏହି ବୁଢ଼ୀଙ୍କ ପ୍ରତି କେହି ବି ଯଦି ଅସ୍ତ୍ର ଉଠାଇବ, ମୁଁ ତାକୁ କ୍ଷମା ଦେବି ନାହିଁ । ଆଗକୁ ଚାଲ ।'

ସେ ଦିନ ଦଳ ପରେ ଦଳ ହୋଇ କେତେ ସୈନ୍ୟ ଦଳ ସେହି ରାସ୍ତା ଦେଇ ସହର ଘୂରିଲେ । ଅନ୍ୟ ସମସ୍ତେ ପ୍ରାଣ ବିକଳରେ ପତାକାକୁ ଲୁଚାଇଲେ । ନିଜେ ବି ଲୁଚିଲେ । କିନ୍ତୁ ଦେଶ ମା'ର ଯୋଗ୍ୟ ସନ୍ତାନଟିର ଭଙ୍ଗା ଝରକା ପାଖରେ ଚିରା ପତାକାଟି ତା'ର ସମ୍ମାନ ଜାରି ରଖି ଉଡିବାରେ ଲାଗିଥିଲା । ପତାକା ପ୍ରତି ନିଜର ଉତ୍ସର୍ଗୀକୃତ ସମ୍ମାନ ଦେଖାଇ ବାର୍‌ବାରା ଫ୍ରିଚୀ ସେଦିନ ଦେଖାଇ ଦେଲେ ଦେଶ ମା'ର ସମ୍ମାନ ହିଁ ସବୁଠୁ ଉଚ୍ଚରେ । ଏହାର ରକ୍ଷା କରିବା ପାଇଁ ଜୀବନକୁ ବାଜି ଲଗାଇ ସମର୍ପଣ କରିବାକୁ ପଡିବ ।

ଏହା ଖାଲି ବିଦେଶର କଥା ନୁହେଁ, ଅନେକ ଦେଶରେ ଦେଶର ମାନ ସମ୍ମାନ ପାଇଁ ଅନେକ ଲୋକ ନିଜ ଜୀବନକୁ ବଳୀ ଦେଇଛନ୍ତି । ଭାରତ ଏ ଦିଗରୁ ଅନେକ ଯୋଗ୍ୟ ସନ୍ତାନଙ୍କର ଜନନୀ ଯେଉଁମାନେ ନିଜେ ଜଳି ଜଳି ଏ ଦେଶ ପତାକାକୁ ଉପରକୁ ଉଠାଇଛନ୍ତି । ଭାରତର ମୁକ୍ତି ସଂଗ୍ରାମ ଏ ଦିଗରେ ଏକ ଜଳନ୍ତା ପ୍ରମାଣ । କେତେ ଯେ ସଂଗ୍ରାମୀ ଏଥିରେ ନିଜକୁ ଝାସ ଦେଇଛନ୍ତି ତାର ତୁଳନା ନାହିଁ । ଏଥିରୁ କେତେକକୁ ଆମେ ଦେଖିବା ।

## ଅଗଷ୍ଟ ବିପ୍ଳବ ଓ ପତାକା

'ଅଗଷ୍ଟ ବିପ୍ଳବ' କହିଲେ ଅନେକ ସାଥି ମୁହଁକୁ ଅନାଇଥାନ୍ତି । ୧୯୪୨ ମସିହାରେ ଭାରତରେ ଗାନ୍ଧିଜୀଙ୍କ ଡାକରାରେ 'ଭାରତ ଛାଡ ଆନ୍ଦୋଳନ୍' ତେଜି ଉଠିଥିଲା । ଏହାର ଆଉ ଏକ ନାମ 'ଅଗଷ୍ଟ ବିପ୍ଳବ' । ଇଂରେଜ ସରକାରଙ୍କ ସହ ଅନେକ ଆଲୋଚନା ବ୍ୟର୍ଥ ହୋଇଯିବା ପରେ ୧୯୪୨ ମସିହା ଅଗଷ୍ଟ ୮ ତାରିଖ ଦିନ ବମ୍ବେଠାରେ ନିଖିଳ ଭାରତ କଂଗ୍ରେସ 'ଭାରତ ଛାଡ' ପ୍ରସ୍ତାବକୁ ଗ୍ରହଣ କଲା । ଏହି ପ୍ରସ୍ତାବରେ ଇଂରେଜ ସରକାରକୁ ଅବିଳମ୍ବେ ଭାରତ ଛାଡ ଚାଲିଯିବା ପାଇଁ କୁହାଯାଇଥିଲା । ଏହାକୁ ଦାଖଲ କରାଯିବା ପରଦିନ ସରକାର କଂଗ୍ରେସକୁ ଏକ ବେଆଇନ ଅନୁଷ୍ଠାନ ଘୋଷଣା କଲେ । ଏହା ସହିତ ସେମାନେ ଗାନ୍ଧିଜୀ, ନେହେରୁ, ଆଜାଦ ଆଦି ପୁରୁଣା କଂଗ୍ରେସ ନେତାଙ୍କୁ ଗିରଫ କରିନେଲେ । ଏହି ଘଟଣାରେ ଭାରତସାରା ବିପ୍ଳବର ନିଆଁ ଚରିଗଲା । ଉତ୍ତ୍ୟକ୍ତ ଜନତା ଦଳ ଦଳ ହୋଇ ମାଡି ଆସିଲେ । ପୋଲିସ୍‌ର ଲାଠିମାଡ, ଗୁଳିଚାଳନାକୁ ଖାତିର ନକରି ସେମାନେ ସରକାରୀ କଳକୁ ଆକ୍ରମଣ କରିଚାଲିଲେ । ବନ୍ଦୀମାନଙ୍କ ସଂଖ୍ୟାରେ ଜେଲ୍‌ଖାନା ଭରିଗଲା । ଦେଶରେ ଅଚଳ ପରିସ୍ଥିତି ସୃଷ୍ଟି ହେଲା । ଏହି ସମୟର୍ରେ ଜାତୀୟ ପତାକା କିପରି ଲୋକଙ୍କୁ ଅସୀମ ପ୍ରେରଣା ଯୋଗାଇଥିଲା ଓ ଲୋକେ ଲାଠି, ଗୁଳିକି ଖାତିର ନକରି କିପରି ନିଜ ଜୀବନକୁ ବାଜି ଲଗାଇଥିଲେ ଏହା କେତେକ ଘଟଣାରୁ ବାରିହୁଏ ।

## ଜୀବନ ଦେଇ ପତାକାଉଡା

ଏହା ଏପରି ଜଣେ ଝିଅଙ୍କ ତ୍ୟାଗର କାହାଣୀ ଯାହାକୁ ପଢିଲେ ଯେ କୌଣସି ସୁସ୍ଥ ଲୋକ ଭିତରେ ଶିହରଣ ଖେଳିଯିବ । ସେ ଥିଲେ କନକଲତା ବଡୁଆ - ଆସାମର ଜଣେ ୧୪-୧୫ ବର୍ଷର ଝିଅ । ଏତେ କମ୍ ବୟସରେ ବି ସେ ଯେଉଁ ସାହସ ଓ ବିପ୍ଳବ ପ୍ରଦର୍ଶନ କଲେ, ତାହା ତାଙ୍କ ଆୟୁଷକୁ ଅସୀମ କାଳ ପାଇଁ ବଢାଇ ଦେଲା । ସେ ଅମର ହୋଇଗଲେ । ୧୯୪୨ ମସିହା ସେପ୍ଟେମ୍ବର ୨୦ ତାରିଖ । ସେ ଦିନ ଆସାମର ଦାରଙ୍ଗ ଜିଲ୍ଲାର ଗୋ'ପୁର ଥାନା ଉପରେ ଭାରତର ଜାତୀୟ ପତାକା ଉଡାଇବା ପାଇଁ ଗୋଟିଏ ବିରାଟ ଶୋଭାଯାତ୍ରା ବାହାରିଲା । ଏହାର ଆଗରେ ରହିଥିଲେ କନକଲତା । ହାତରେ ତ୍ରିରଙ୍ଗାପତାକା ଧରି ସେ ମାଡି ଚାଲିଥାନ୍ତି । ଶୋଭାଯାତ୍ରା ଥାନା ପାଖରେ ପହଞ୍ଚିଗଲା । ଥାନାର ଜଣେ ଅଫିସର୍ ଶୋଭାଯାତ୍ରା ସାମନାକୁ ଆସି ଏହାର ବାଟ ରୋକିଲେ । ଘୋଷଣା କଲେ, 'ଆଉ ପାଦେ ବି ଆଗେଇବାକୁ ଦିଆଯିବ ନାହିଁ ।' କନକଲତା ଦମ୍ଭର ସହ ଉତ୍ତର ଦେଲେ, 'ଥାନାଟା ରାଜ୍ୟ ଲୋକଙ୍କର । ସରକାର କର୍ମଚାରୀମାନେ ଜନତାର ଚାକର ।'

ଅଫିସର୍ ତାଙ୍କୁ ସଙ୍ଗିନ୍ ଓ ପିସ୍ତଲ୍ ଦେଖାଇ ଡରାଇଲେ । କିନ୍ତୁ କନକଲତା ଟିକିଏ ବି ଡରିଲେ ନାହିଁ । କହିଲେ, 'ତୁମେ ତୁମ କାମ କର । ମୁଁ ଦରକାର ପଡିଲେ ମୋ ଜୀବନ ବି ଦେବା ପାଇଁ ପ୍ରସ୍ତୁତ । କିନ୍ତୁ ମୁଁ ମୋ କର୍ତ୍ତବ୍ୟ ଅବଶ୍ୟ ପାଳନ କରିବି ।' ଏଥିରେ ଉତ୍କ୍ଷିପ୍ତ ହୋଇ ଅଫିସର୍ ଗୁଳି ଚଳାଇଦେଲେ । କୁନି ବିପ୍ଳବୀ କନକଲତା ସେଠାରେ ଟଳି ପଡିଲେ । ମୁକୁନ୍ଦ ନାମକ ଜଣେ



ଯୁବକ ତାଙ୍କ ରକ୍ତାକ୍ତ ହାତରୁ ଜାତୀୟ ପତାକା ନେଇଯାଇ ଆଗେଇଗଲେ । ତାଙ୍କୁ ବି ଗୁଳି ବାଜିଲା । ସେ ବି ଟଳିପଡିଲେ । କିନ୍ତୁ ସେଦିନ ଜନତା ଜୀବନକୁ ପାଣି ଛଡାଇ ଆଗେଇ ଆସିଥିଲେ । ଏଠାକାର ନିର୍ମମ ହତ୍ୟା ଚାଲିଥିଲା ବେଳେ ତେଣେ ଥାନାର କୋଠା ଉପରେ ଜାତୀୟ ପତାକା ଉଡି ସାରିଥିଲା ।

ସେହି ସମୟରେ ଲୋକଙ୍କ ଭିତରେ ଦେଶର ସମ୍ମାନ ପାଇଁ ଏକ ଅପୂର୍ବ ଶକ୍ତି ଓ ଜାଗରଣ ଦେଖା ଦେଇଥିଲା । ସେହିମାନଙ୍କ ଯୋଗୁଁ ହିଁ ଆମେ ପତାକା ତଳେ ଆଜି ମୁଣ୍ଡ ଟେକି ଠିଆ ହୋଇପାରୁଛେ, ହସିପାରୁଛେ ଓ ମଣିଷ ପରି ଜିଇଁ ପାରୁଛେ ।

## ଭୋଗେଶ୍ୱରୀ ଦେବୀ ଓ ନାତୁଣୀ ରତ୍ନମାଳାଙ୍କ ବିପ୍ଳବ

ଏହା ଆସାମର ଆଉ ଏକ ଘଟଣା । ସେତେବେଳକୁ ବରହମ୍ପୁର କଂଗ୍ରେସ ଭବନକୁ ପୋଲିସ୍ ଦଖଲ କରିନେଇଥାନ୍ତି । ଏଠାରେ କୌଣସି ସଭା ସମିତିକୁ ସେମାନେ କରାଇ ଦେଉ ନଥାନ୍ତି । ୧୯୪୨ ମସିହା ସେପ୍ଟେମ୍ବର ୧୬ ତାରିଖ ଦିନ ସେଠାରେ ଗୋଟିଏ ଭୋଜି କରିବା ପାଇଁ ସହରର ଲୋକମାନେ ପ୍ରସ୍ତୁତ ହେଉଥାନ୍ତି । ଏଥିରେ ଭାଗ ନେବା ପାଇଁ ସହରର ଅନେକ ଲୋକ ଏକାଠି ହେଲେ । ସରକାର ସନ୍ଦେହ କଲେ ଏଠାରେ କୌଣସି ସଭାସମିତି ଓ ଆଲୋଚନା ହୋଇଯାଇପାରେ । ତେଣୁ ସଶସ୍ତ୍ର ପୋଲିସ୍ ସେହି ଜାଗାରେ ପହଞ୍ଚିଗଲେ ।

କେତେ ଜଣ ବାଳିକା ଜାତୀୟ ପତାକା ଧରି ସେହି ସ୍ଥାନକୁ ଯାଉଥିଲେ । ଜଣେ ଗୋରା ସାମରିକ ଅଫିସର୍ ରତ୍ନମାଳା ନାମକ ଜଣେ ପନ୍ଦର ଷୋହଳ ବର୍ଷ ବୟସର ବାଳିକା ହାତରୁ ପତାକା ଛଡାଇ ନେବାକୁ ବସିଲା । ରତ୍ନମାଳା ପତାକାଟିକୁ ଜାବୁଡି ଧରିଥାନ୍ତି । ଗୋରା ଲୋକଟିର ଧକ୍କାରେ ରତ୍ନମାଳା ତଳେ ପଡିଗଲେ ।ଏହା ଦେଖି ତାଙ୍କ ଜେଜେମା' ଭୋଗେଶ୍ୱରୀ ଦେବୀ ଝପଟି ଆସିଲେ । ପତାକାର ମୁଣ୍ଡରେ ସେ ଗୋରାଲୋକଟିର ମୁହଁକୁ ଆଘାତ କଲେ । ଗୋରା ଅଫିସର୍ ସଙ୍ଗେ ସଙ୍ଗେ ଏହି ଅପମାନର ପ୍ରତିଶୋଧ ନେଇଗଲେ । ତାଙ୍କ ଗୁଳିରେ ବୁଢୀ ଭୋଗେଶ୍ୱର ଦେବୀ ସେଠାରେ ଟଳି ପଡିଲେ ।

ସେଠାରେ ଥିବା ଲୋକମାନେ ପତାକା ପ୍ରତି ଏହି ବ୍ୟବହାର ଓ ବର୍ବରଚାର ପ୍ରତିବାଦ କରି ପୋଲିସ୍ ଆଡକୁ ମାଡି ଆସିଲେ । ପୋଲିସ୍ ଲଗାତାର ଗୁଳି ଚଳାଇଲା । ଅନେକ ଲୋକ ସେ ଦିନ ମୃତାହତ ହୋଇଥିଲେ ।

## ମରିଗଲେ ସିନା ହାରିଲେ ନାହିଁ

ସେ ଥିଲେ ମାତଙ୍ଗିନୀ ହାଜରା । ଆସାମର ଜଣେ ୭୩ ବର୍ଷର ବୃଦ୍ଧା । ଅଗଷ୍ଟ ବିପ୍ଳବ ସମୟରେ ମେଦିନୀପୁରର ତମ୍‌ଲୁକ୍ ଥାନା ଆଡକୁ ଗୋଟିଏ ଶୋଭାଯାତ୍ରା ଚାଲିଥିଲା । ବାଟରେ ସୈନ୍ୟମାନେ ଏହାର ପଥ ରୋକିଲେ । ଲୋକଙ୍କୁ ଡରାଇ ତଡିଦେବା ପାଇଁ ଗୁଳି ବି ଚଳାଇଲେ । ଶୋଭାଯାତ୍ରାକାରୀମାନେ ଅଟକି ଗଲେ । ଏହି ସମୟରେ ଲକ୍ଷ୍ମୀ ନାରାୟଣ ନାମକ ତେର ବର୍ଷର ଜଣେ ପିଲା ଆଗକୁ ଛୁଟିଗଲା । ସେ ଜଣେ ସୈନ୍ୟହାତରୁ ବନ୍ଧୁକକୁ ଛଡାଇ ଆଣିଲା । ସାଙ୍ଗେ ସାଙ୍ଗେ ତା' ଉପରେ ଦଳଗତ ଆକ୍ରମଣ ଆରମ୍ଭ ହୋଇଗଲା । ସୈନ୍ୟମାନେ ତାକୁ ଘେରିଯାଇ ପିଟିବାରେ ଲାଗିଲେ ।



ସେଠାରେ ବୃଦ୍ଧା ମାତଙ୍ଗିନୀ ଏହି ନିର୍ମମ ଅତ୍ୟାଚାରକୁ ସହି ପାରିଲେ ନାହିଁ । ଜାତୀୟ ପତାକାକୁ ଟେକି ଧରି ସେ ସୈନ୍ୟମାନଙ୍କ ଆଡକୁ ଆଗେଇଗଲେ । ନିଷ୍ଠୁର ସୈନ୍ୟମାନେ ତାଙ୍କ ଉପରକୁ ଗୁଳି ଚଳାଇ ଦେଲେ । ତାଙ୍କର ହାତରେ ଗୋଟିଏ ଗୁଳି ବାଜିଗଲା । ତଥାପି ବୃଦ୍ଧା ଅଟକିଲେ ନାହିଁ । ପତାକାଟିକୁ ଜାବୁଡି ଧରି ସେ ସେହି ଭାରତୀୟ ସୈନ୍ୟମାନଙ୍କୁ ଲକ୍ଷ୍ୟ କରି କହିଲେ, 'ଭାରତୀୟ ହୋଇ ବି ତୁମେ ନିଜ ଦେଶର ଭାଇଭଉଣୀଙ୍କୁ ଗୁଳି କରୁଛ । ଏହା କଣ ଠିକ୍ କାମ ?' କିନ୍ତୁ ସୈନ୍ୟଙ୍କ ହୃଦୟ ନିର୍ମମ । ସେମାନେ ମାତଙ୍ଗିନୀଙ୍କ ପ୍ରଶ୍ନର ଜବାବ ଦେଲେ ଗୁଳିରେ । ତାଙ୍କ କପାଳରେ ଗୁଳି ବାଜିଲା । ସେ ସେଠାରେ ହିଁ ଟଳି ପଡିଲେ । କିନ୍ତୁ ଶେଷ ଯାଏଁ ସେ ପତାକାଟିକୁ ଜାବୁଡି ଧରିଥାନ୍ତି । ପତାକା ଲୋକଙ୍କ ମଧ୍ୟରେ କିପରି ସିଂହର ଶକ୍ତି ଓ ସାହସ ଜଗାଇ ଦେଇଥାଏ, ଏହା ତା'ର ଏକ ଜ୍ୱଳନ୍ତ ନମୁନା । ସେଦିନର ଗୁଳିକାଣ୍ଡରେ ବୀରାଙ୍ଗନା ମାତଙ୍ଗିନୀ, ବାଳକ ଲକ୍ଷ୍ମୀ ନାରାୟଣ ଓ ଆହୁରି ଅନେକ ସତ୍ୟାଗ୍ରହୀ ଦେଶ ପାଇଁ ଶହୀଦ ହୋଇଗଲେ ।

# ପାଟନାର ଶହୀଦ ସ୍ତମ୍ଭର କାହାଣୀ

ପାଟନାର ସଚିବାଳୟ ଆଗରେ ଗୋଟିଏ ଉଚ୍ଚ ସ୍ତମ୍ଭ ଅଛି । ଏହା ଶହୀଦ ସ୍ତମ୍ଭ ନାମରେ ଜଣା । ଏହି ସ୍ତମ୍ଭ ଏପରି ଏକ ଗମ୍ଭୀର ଘଟଣାର ମୂକସାକ୍ଷୀ ଯାହା ଶୁଣିଲେ ଯେ କେହି ବି ରାଗିଯିବ । ଅଗଷ୍ଟ ବିପ୍ଳବ ସମୟରେ ଆମ ଜାତୀୟ ପତାକାର ମର୍ଯ୍ୟାଦା ପାଇଁ ଜଣ ଜଣ ହୋଇ ସାତ ଜଣ ଛାତ୍ର ଏଠାରେ ଜୀବନ ଦେଇଥିଲେ । ଏହି ସ୍ତମ୍ଭ ସେମାନଙ୍କ ସ୍ମୃତିକୁ ସାଇତି ଧରି ଏଠାରେ ଠିଆ ହୋଇଛି । ସଂକ୍ଷିପ୍ତରେ କହିଲେ ଏହା ଦେଶ ପାଇଁ ଏକ 'ଯଜ୍ଞପୀଠ' ଥିଲା ।

ଏହା ସେହି ଅଗଷ୍ଟ ବିପ୍ଳବ ସମୟର ଘଟଣା । କଂଗ୍ରେସ ତରଫରୁ ଗୋରା ସରକାରଙ୍କୁ 'ଭାରତ ଛାଡ' ଚେତାବନୀ ଦିଆଯିବା ପରେ ସରକାର ଦେଶସାରା ଗିରଫ ଅଭିଯାନ ଚଳାଇଲେ । ଯିଏ ଯେଉଁଠି ମୁଖ୍ୟ କଂଗ୍ରେସ ନେତା ଥିଲେ କେହି ସେଥିରୁ ବାଦ ପଡିଲେ ନାହିଁ । ଏପରିକି ବିହାରର ଶଯ୍ୟାଶାୟୀ ନେତା ରାଜେନ୍ଦ୍ର ପ୍ରସାଦ ମଧ୍ୟ । ସେ ଶ୍ୱାସରୋଗରେ ପୀଡିତ ଥାଇ ଚିକିତ୍ସାଧୀନ ଥାଆନ୍ତି । ତଥାପି ତାଙ୍କୁ ବି ଗିରଫ କରି ଜେଲ୍‌କୁ ପଠାଇ ଦିଆଗଲା । ଏହି କ୍ରୁର ବ୍ୟବହାର ଲୋକଙ୍କୁ ଉତ୍ତେଜିତ କରିଦେଲା ।

ଅଗଷ୍ଟ ୧୧ ତାରିଖ ଉପରବେଳା ସଚିବାଳୟ ଆଗରେ ଅନେକ ଲୋକ ଏକାଠି ହେଲେ । ପ୍ରାୟ ୪୦ ହଜାର ଲୋକଙ୍କର ଏହି ପଟୁଆର ସେଠାରେ ପହଞ୍ଚିଲା । ସରକାର ସତର୍କ ହୋଇଗଲେ । ଗୋରା ଓ ଗୁର୍ଖା ଫଉଜଙ୍କ ସହ ସରକାରୀ ହାକିମମାନେ ସେଠାରେ ପହଞ୍ଚିଗଲେ । ପ୍ରଥମ ଅବସ୍ଥାରେ ଏହା ଏକ ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରା ଥିଲା । ଏହାର ଆଗରେ ଛାତ୍ରମାନେ ଜାତୀୟ ପତାକା ଧରି ଆଘୋଷ ଦେଉଥାନ୍ତି, 'ଜୟହିନ୍ଦ୍', 'ଇନ୍‌କିଲାବ ଜିନ୍ଦାବାଦ' । ସେମାନଙ୍କ ତଣ୍ଡିଫଟା ଗର୍ଜନରେ ଇଲାକାଟି କମ୍ପିଯାଉଥାଏ । ଏହି ସମୟରେ ଛାତ୍ରମାନେ ଅଧିକ ଉତ୍‌କ୍ଷିପ୍ତ ହୋଇ ଉଠିଲେ । ସଚିବାଳୟ ଉପରେ ଭାରତର ଜାତୀୟ ପତାକା ଉଡାଇବା ପାଇଁ ସେମାନେ ଜିଦ୍ ଧରିଲେ । ଜିଲ୍ଲା ମାଜିଷ୍ଟ୍ରେଟ୍ ବା ଏଥିରେ କିପରି ରାଜି ହୁଅନ୍ତେ ? ସେ ସେମାନଙ୍କୁ ଧମକାଇ ଏହି କାମରୁ ବାରଣ କରିବାକୁ ଚେଷ୍ଟା କଲେ । ସେମାନଙ୍କୁ ଫେରିଯିବା ପାଇଁ ଆଦେଶ ଦେଲେ । କିନ୍ତୁ ଛାତ୍ରମାନେ ତାଙ୍କ କଥାକୁ ଗୁରୁତ୍ୱ ଦେଲେ ନାହିଁ । ପୋଲିସ୍ ଓ ଛାତ୍ରମାନଙ୍କ ମଧ୍ୟରେ ଟଣାଓଟରା ଆରମ୍ଭ ହୋଇଗଲା ।

ଏହି ସମୟରେ ରାମକୃଷ୍ଣ ଶର୍ମା ନାମକ ଜଣେ ଛାତ୍ର ଭିଡ ଭିତରେ ଗଳି ଯାଇ ଘର ଉପରେ ଛୋଟ ତ୍ରିରଙ୍ଗା ପତାକାଟିଏ ଲଗାଇ ଦେଲେ । ଏହା ଛାତ୍ରମାନଙ୍କ ଉତ୍ସାହକୁ ଆହୁରି ତେଜି ଦେଲା । କୌଣସି ବାଧାକୁ ନ ମାନି ସେମାନେ ସଚିବାଳୟ ମଧ୍ୟକୁ ଧସି ପଶିବା ପାଇଁ ଚେଷ୍ଟା କଲେ । ଅନେକ ଛାତ୍ରଙ୍କୁ ଗିରଫ କରି ଦିଆଗଲା । ତଥାପି ଅବସ୍ଥା ଶାନ୍ତ ପଡିଲା ନାହିଁ । ମାଜିଷ୍ଟ୍ରେଟ ଗୁଳି ଚଳାଇବା ପାଇଁ ଆଦେଶ ଦେଇ ଦେଲେ । ଜଣ ଜଣ ହୋଇ ପାଞ୍ଚଜଣ ଛାତ୍ର ଘଟଣା ସ୍ଥଳୀରେ ଟଳି ପଡିଲେ । ଅନେକ ଆହତ ଛାତ୍ରଙ୍କ ମଧ୍ୟରୁ ଆହୁରି ଦୁଇଜଣ ଛାତ୍ର ଡାକ୍ତରଖାନାରେ ପ୍ରାଣତ୍ୟାଗ କଲେ ।



ଏହି ଦମନଲୀଳାର ଖବର ଓ ପ୍ରଭାବ ଚାରିଆଡେ ଖେଳିଗଲା । ସହରସାରା ଲୋକ ମାତି ଉଠିଲେ । ଏହାକୁ ସରକାର ସମ୍ଭାଳନ୍ତେ ବା କିପରି ? ତିନି ଚାରି ଦିନ ଯାଏଁ ପାଟନା ଓ ଆଖପାଖ ଅଞ୍ଚଳରେ ଇଂରେଜ ସରକାରଙ୍କର କାହାକୁ ବି ଦେଖିବାକୁ ମିଳିଲା ନାହିଁ ।

ଏଠାରେ ଅଳ୍ପ କିଛି ଘଟଣାକୁ ଉଲ୍ଲେଖ କରାଯାଇଛି । କିନ୍ତୁ ଏପରି ଅନେକ ଘଟଣା ଅଜଣା ଅଶୁଣା ଭାବରେ ଘଟି ଯାଇଛି । ଜାତୀୟ ପତାକାକୁ ମୁକ୍ତ ଭାବରେ ଟେକି ଧରିବା ପାଇଁ ଦେଶସାରା ପ୍ରଚଣ୍ଡ ଉନ୍ମାଦନା ଖେଳି ଯାଇଥିଲା । ଦେଶକୁ ବିଦେଶ କବଳରୁ ମୁକୁଳାଇବା ପାଇଁ ଅନେକ ନେତାଙ୍କର ବିବିଧ ରକମର ଯୋଜନା ଥିଲା । ଗାନ୍ଧିଜୀ, ସୁଭାଷ ବୋଷ, ଖୁଦୀରାମ, ଅରବିନ୍ଦ ଘୋଷ, ଭଗତ ସିଂ, ଲକ୍ଷ୍ମଣ ନାୟକ, ଆଦି ସମସ୍ତଙ୍କ ଉଦ୍ୟମର ଢାଞ୍ଚା ଅଲଗା ଥିଲା । କିନ୍ତୁ ସମସ୍ତଙ୍କର ଆଖି ଆଗରେ ରହିଥିଲା ଗୋଟିଏ ମାତ୍ର ସ୍ୱପ୍ନ - ତ୍ରିରଙ୍ଗା ପତାକା କିପରି ମୁଣ୍ଡ ଟେକି ଭାରତର ଗଗନ ପବନରେ ମୁକ୍ତିର ଭାବ ଭରିଦେବ । ସମସ୍ତେ ଭାରତ ମା'ର ସ୍ୱାଧୀନତାକୁ ଏହି ପତାକାର ଉତ୍ତୋଳନ ମାଧ୍ୟମରେ ହିଁ ଦେଖୁଥିଲେ । କିଏ ପତାକା ଉଡାଇ ଲାଠିମାଡ ଖାଇଛି, କିଏ ଗୁଳି ମାଡରେ ଅକାଳରେ ଆଖି ମୁଜିଛି, କିଏ ପତାକାର ରାହାରେ ଫାଶୀ ଖୁଣ୍ଟରେ ଚଢିଛି । କିନ୍ତୁ ଏହି ଏକମାତ୍ର ଲକ୍ଷ୍ୟ ଓ ବିରାଟ ଦଳଗତ ଉଦ୍ୟମ ହେଉଛି—ଆଜି ଦେଶର ଏହି ସ୍ୱାଧୀନତା । ପତାକା ଏହା ପଛରେ ପ୍ରଚଣ୍ଡ ପ୍ରେରଣାର ଭୂମିକା ତୁଲାଇଛି ।

## ଅଲିମ୍ପିକ୍ ଭୂଇଁରେ ତ୍ରିରଙ୍ଗା ଉଡିଲା

ଏହା ଜଣେ କ୍ରୀଡାବିତ୍‌ଙ୍କର ଅନୁଭୂତି । ଏହା ଦେଶକୁ ସ୍ୱାଧୀନ କରିବାରେ ଏକ ସିଧା ଭୂମିକା ନଥିଲା । କିନ୍ତୁ ଦେଶ ପ୍ରତି କ୍ରୀଡାବିତ୍‌ଟିର ମନରେ ଥିବା ଅଶେଷ ପ୍ରେମ ଓ ସରଳ ବିଚାର ସହ ବଳିଷ୍ଠ ଉଦ୍ୟମର ଏକ ଅଭୂଲା ନମୁନା । ସେହି କ୍ରୀଡାବିତ୍ ଜଣକ ଥିଲେ ପରାଧୀନ ଭାରତର ଖ୍ୟାତନାମା ସାଇକେଲ୍‌ଚାଳକ ଜାନକୀ ଦାସ । ସେ ଲାହୋରରେ ଜନ୍ମ ହୋଇ ଉଚ୍ଚ ଶିକ୍ଷା ଲାଭ କରିଥିଲେ । ୧୯୪୬ ମସିହାରେ ସୁଇଜରଲାଣ୍ଡର ରାଜଧାନୀ ଜୁରିଚ୍ ଠାରେ ଅଲିମ୍ପିକ କ୍ରୀଡା ଆୟୋଜିତ ହୋଇଥିଲା । ଜାନକୀ ଦାସ ଏଠାରେ ଭାଗ ନେଉଥିବା ଭାରତୀୟ ଦଳର ଅଧିନାୟକ ବଛା ଯାଇଥାନ୍ତି । ଭାରତ ଛାଡିବା ଆଗରୁ ସେ ଗାନ୍ଧିଜୀଙ୍କ ଆଶୀର୍ବାଦ ନେବାକୁ ଠିକ୍ କଲେ ।

ସେତେବେଳେ ଉଡାଜାହାଜର ବିଶେଷ ସୁବିଧା ନଥିଲା । ରେଳଗାଡିରେ ହିଁ ଦୂର ଦୂର ଜାଗାକୁ ଯାଇ ହେଉଥିଲା । ଗାନ୍ଧିଜୀ କଲିକତାରେ ରହୁଛନ୍ତି ଶୁଣି ଜାନକୀ ଦାସ ସେଠାରେ ପହଞ୍ଚିଲେ । କିନ୍ତୁ ଗାନ୍ଧିଜୀ ସେଠାରେ ନଥିଲେ । ସେଠାରୁ ସେ ବମ୍ବେ ଗଲେ । କିନ୍ତୁ ଗାନ୍ଧିଜୀ ବମ୍ବେରେ ବି ନଥିଲେ । ସେଠାରୁ ସେ ଅହମଦାବାଦ ଯାଇ ସାବରମତୀ ଆଶ୍ରମରେ ଗାନ୍ଧିଜୀଙ୍କୁ ଭେଟିଲେ । ଦେଶ ପାଇଁ ସୁନାମ ଆଣିବା ଲକ୍ଷ୍ୟ ରଖି ସେ ଗାନ୍ଧିଜୀଙ୍କ ଆଶୀର୍ବାଦ ଲୋଡିଲେ ।



ତାଙ୍କର କାର୍ଯ୍ୟକଳାପ ଓ ଲକ୍ଷ୍ୟ ବିଷୟରେ ଶୁଣିବା ପରେ ଗାନ୍ଧିଜୀ ଏକ ଯୋଜନା କଲେ । ସେତେବେଳେ ଅଲିମ୍ପିକ କ୍ରୀଡାରେ ଭାରତ ପାଇଁ ଉଦ୍ଦିଷ୍ଟ ପତାକା ଖୁଣ୍ଟରେ ଇଂରେଜ ପତାକା ୟୁନିଅନ୍ ଜାକ୍ ବନ୍ଧା ଯାଉଥାଏ । ଗାନ୍ଧିଜୀ ପ୍ରସ୍ତାବ ଦେଲେ, ଅଲିମ୍ପିକ କ୍ରୀଡାରେ ଖାଣ୍ଟି ଭାରତୀୟ ପତାକାଟିଏ ଉଡାଇବାର ଚେଷ୍ଟା କରାଯାଉ । ଜାନକୀ ଦାସ ଆଗ୍ରହ ଓ ଉତ୍ସାହ ଦେଖାଇବାରୁ ଗାନ୍ଧିଜୀ ତାଙ୍କୁ ଏକ ବଡ ଖଦଡ ତ୍ରିରଙ୍ଗା ଦେଲେ । ଏଥିରେ ସେ କପିଙ୍ଗ୍ ପେନ୍‌ସିଲ୍‌ରେ ନିଜ ଦସ୍ତଖତ ଦେଲେ । ଗାନ୍ଧିଜୀଙ୍କ ଆଶୀର୍ବାଦ ନେଇ ଜାନକୀ ଦାସ ଏକ ଗୁରୁ ଦାୟିତ୍ୱ ନିଭାଇବାକୁ ବାହାରିଲେ ।

ଅଲିମ୍ପିକ କ୍ରୀଡାର ଉଦଘାଟନ ଉତ୍ସବ ଚାଲିଲା । ଭାରତୀୟ ପତାକା ଖୁଣ୍ଟରେ ୟୁନିଅନ୍ ଜାକ୍ ବନ୍ଧା ହୋଇଥାଏ । ଗାନ୍ଧିଜୀଙ୍କ ଠାରୁ ଆସିବା ବେଳଠୁ ଜାନକୀ ଦାସଙ୍କ ମନ ଭିତରେ ଅନେକ ଯୋଜନା ଓ ଦ୍ୱନ୍ଦ୍ୱ ଚାଲିଥାଏ - ସେ କିପରି ଏହି ବଡ କାମଟିକୁ ତୁଲାଇବେ । ନିଜ ପୋଷାକ ଭିତରେ ସେ ଗାନ୍ଧିଜୀଙ୍କ ଆଶା ଓ ସ୍ୱପ୍ନର ସନ୍ତକ ତ୍ରିରଙ୍ଗା ପତାକାଟିକୁ ଲୁଚାଇ ଧରିଥାନ୍ତି । ପତାକା ଉତ୍ତୋଳନ କରିବା ପାଇଁ ଭାରତର ନାମ ଘୋଷଣା କରାଗଲା । ଜାନକୀ ଦାସ ଦୃଢ ମନବଳ ସହ ଖୁଣ୍ଟ ନିକଟକୁ ଗଲେ । ଖୁଣ୍ଟିରୁ ୟୁନିଅନ୍ ଜାକ୍‌କୁ ଖୋଲି ଦେଇ ସେ ସେଠାରେ ଭାରତୀୟ ତ୍ରିରଙ୍ଗାକୁ ଠିକ୍ ଭାବେ ବାନ୍ଧି ଦେଲେ । ଅନ୍ୟ ଦେଶ ଅପେକ୍ଷା ତାଙ୍କୁ ପତାକା ଉତ୍ତୋଳନ କରିବାକୁ କିଛି ସମୟ ଅଧିକା ଲାଗିଲା । କିନ୍ତୁ କିଛି ସମୟ ମଧ୍ୟରେ ଜାନକୀ ଦାସ ଓ ଗାନ୍ଧିଜୀଙ୍କ ସ୍ୱପ୍ନକୁ ସଫଳ କରି ଭାରତୀୟ ତ୍ରିରଙ୍ଗା ଫରଫର ହୋଇ ଉଡିବାରେ ଲାଗିଲା । ଖେଳୁଆଡ ମନୋଭାବର ପ୍ରତୀକ ଏହି ଘେଣ୍ଟିଟିରେ ଜୋରରେ କରତାଳି ଶୁଭିଲା ।

ପରଦିନ ପୃଥିବୀର ସବୁ ବଡ ବଡ ଖବର କାଗଜରେ ଜାନକୀଙ୍କ ସହ ଭାରତୀୟ ପତାକା ଉଡୁଥିବାର ଫଟୋ ଓ ବିବରଣୀ ପ୍ରକାଶ ପାଇଲା । ଏହି ଖବର ପଢ଼ି ଗାନ୍ଧିଜୀ ଅତ୍ୟନ୍ତ ପ୍ରସନ୍ନ ହେଲେ । ଟେଲିଗ୍ରାମରେ ତାଙ୍କ ପାଖକୁ ଖବର ପଠାଇଲେ, 'ଖବର କାଗଜରୁ ଜାଣିଲି, ଆପଣ ନିଜ ପ୍ରତିଜ୍ଞା ରକ୍ଷା କରିଛନ୍ତି । ମୋର ଆଶୀର୍ବାଦ ସଫଳ ହୋଇଛି । ଏଥିପାଇଁ ମୋର ଧନ୍ୟବାଦ ଜଣାଉଛି । ମୋର ବିଶ୍ୱାସ, ତା'ର ସ୍ୱାଧୀନତା ପାଇବାକୁ ଭାରତକୁ ଆଉ ବେଶୀ ଦିନ ଲାଗିବ ନାହିଁ ।'

ଅନ୍ୟ ସମୟ ହୋଇଥିଲେ ଏହି ଘଟଣାଟି ଆନ୍ତର୍ଜାତିକ ସ୍ତରରେ ନାନା ବାଦବିବାଦ ସୃଷ୍ଟି କରିଥାନ୍ତା । କିନ୍ତୁ ଏହି ସମୟବେଳକୁ ଭାରତରେ ଇଂରେଜ ସରକାରର ବିଷଦାନ୍ତ ଭାଙ୍ଗି ସାରିଥିଲା । ଏହି ଗୌରବମୟ ଘଟଣାଟିର ସ୍ମୃତିକୁ ଏବେ ବି ଦେଖିହେବ । ଦିଲ୍ଲୀର ରାଜଘାଟରେ ଥିବା ଗାନ୍ଧୀ ସଂଗ୍ରହାଳୟରେ ଜୁରିଚ ଅଲିମ୍ପିକରେ ଉଡାଯାଇଥିବା ସେହି ତ୍ରିରଙ୍ଗା ପତାକା ଓ ଗାନ୍ଧିଜୀଙ୍କ ତାର ବାର୍ତ୍ତାଟିକୁ ଏଠାରେ ସାଇତି ରଖାଯାଇଛି ।

ପତାକାଗୁଡିକ ବିଷୟରେ ଏତେ କଥା ଶୁଣି କୁନୁ ଓ ରାନୁ ଖୁସି ହୋଇଯାଇଥାନ୍ତି । ଏହା ବିଷୟରେ ଆହୁରି ଅଧିକରୁ ଅଧିକ ଜାଣିବାକୁ ତାଙ୍କର ମନହେଲାଣି । ଏଣେ ରାତିର ଖାଇବା ବେଳ ହେଲାଣି । ବୋଉ କହିଲେ, ' ଆଜି ଏତିକିରେ ସାରିବା । ଖାଇବା ଚାଲ । ମୋର ଆଉ କିଛି କାମ ବାକି ଅଛି । ଆଗକୁ ଏ ବିଷୟରେ ଆହୁରି ଜାଣିବାକୁ ଚେଷ୍ଟା କରିବା ।' କୁନୁ ଏ ଯାଏଁ ଉଠିବାକୁ ରାଜି ନ ଥାଏ । ସେ କହିଲା, ' ଆଉ ଅଳ୍ପ କିଛି କୁହନା ବୋଉ । ଆମ ତ୍ରିରଙ୍ଗା ପତାକା ପଛରେ ତ ଆହୁରି କେତେ ଏପରି ଘଟଣା ଥିବ ।' ବୋଉ କହିଲେ, 'ହଁ । ଅନେକ; କିନ୍ତୁ ମୁଁ କ'ଣ ସବୁ କଥା ଜାଣିଛି ? ବିଭିନ୍ନ ବହିରୁ ପଢ଼ି, ସାଙ୍ଗସାଥି, ଶିକ୍ଷକଙ୍କ ସହ କଥାବାର୍ତ୍ତା କରି ମୁଁ ଯାହା କିଛି ଜାଣିଥିଲି, ତାହା ମୁଁ ଆଜି ଶୁଣାଇଲି । ଏ ବିଷୟରେ କିଛି ଭଲ ବହି ବି ରହିଛି । ତୁମେ ସେଥିରୁ ଯଥେଷ୍ଟ ବେଶୀ ଜାଣିପାରିବ । ଏଥର ମୁଁ ଉଠୁଛି । ବଢ଼ା ବଢ଼ି କରେ । ତୁମେ ହାତ ଗୋଡ ଧୋଇ ମସିଣା ପକାଇ ପାଣି ଆଦି ରଖ ।''

ଯେ କୌଣସି ବିଷୟରେ ବି ଆଗ୍ରହ ବଢିଲେ ସେଥିରେ ମନ ଲାଗିଯାଏ । ସମସ୍ତେ ମନ ଖୁସିରେ କାମରେ ଲାଗିଗଲେ । ଅନ୍ୟଦିନ ଅପେକ୍ଷା ଆଜି କୁନୁ, ରାନୁ ସଅଳ ସଅଳ କାମ କରି ପକାଉଥାନ୍ତି । ଏହା ତାଙ୍କର ଆଗ୍ରହର ବିଷୟ । ଖାଇବା ସହିତ ସେମାନଙ୍କର ଆଲୋଚନା ଆଗେଇ ଚାଲିଲା । ରାନୁ ପଚାରିଲା, 'ବାପା, ପତାକା ତ ଆମର ଏତେ ପ୍ରିୟ । କିନ୍ତୁ କେବଳ ଅଗଷ୍ଟ ପନ୍ଦର ଓ ଜାନୁଆରୀ ଛବିଶରେ ହିଁ କାହିଁକି ପତାକା ଉତ୍ତୋଳନ କରାଯାଏ ? ' ବାପା କହିଲେ, ହଁ । ପତାକା ଆମର ସବୁଠୁ ସମ୍ମାନୀୟ ମଧ୍ୟ ।

ଏଥିପାଇଁ ଦେଶସାରା ଲୋକ ଯେପରି ଏହାର ଉଚିତ ସମ୍ମାନ କରିବେ ଓ ଏହାର ଯତ୍ନ ନେବେ, ସେଥିପାଇଁ କେତେଗୁଡିଏ ନୀତି ନିୟମ ରଖାଯାଇଛି । ଏହାକୁ ବ୍ୟବହାର କରାଯିବା ବିଷୟରେ ଯେଉଁ ନିୟମାବଳୀ ରହିଛି, ମୁଁ ତୁମକୁ ସେହି ଲେଖାଟି ଦେବି । ସେଥିରୁ ତୁମେ ପୂରା ଧାରଣା ପାଇଯାଇ ପାରିବ ।' (ଏହି ପୁସ୍ତିକାର ଶେଷ ଭାଗରେ କିଛି ନିୟମାବଳୀକୁ ଯୋଡି

ଦିଆଯାଇଛି, ଯାହା ସାଧାରଣ ଲୋକ ଜାଣିବା ଦରକାର ।) ଏହାଛଡ଼ା ପତାକା ବିଷୟରେ ତୁମେ ବିଭିନ୍ନ ବହି ପଢ଼ିଲେ ଆମଠୁ ଅଧିକ ଜାଣି ପାରିବ । ତୁମେ ମଧ୍ୟ ଆମକୁ ଶୁଣାଇବ ।

## ଯଦି ପତାକା ନ ଥାନ୍ତା ...

କୁନି କିଛି ସମୟ ପାଇଁ ଭାବିବା ପରେ ପଚାରିଲା, 'ବାପା, ପତାକା ନଥିଲେ କ'ଣ ଚଳନ୍ତା ନାହିଁ ? ପତାକା ତ ନିଜେ କୌଣସି କାମ କରୁନାହିଁ । ଲୋକମାନେ ସବୁ କାମ କରୁଛନ୍ତି । ପତାକା ନଧରି କ'ଣ କାମ ସବୁ ହୋଇ ପାରି ନଥାନ୍ତା ?' ଏହା ଏକ ନୂଆ ଧରଣର ପ୍ରଶ୍ନ ଥିଲା । ବୋଉ, ବାପା, ରାନୁ ଏ ବିଷୟରେ ଆଗରୁ କେବେ ଭାବି ନଥିଲେ । ପ୍ରଶ୍ନଟି ତାଙ୍କୁ ଭଲ ଲାଗିଲା । ସମସ୍ତେ ଭାବିବାରେ ଲାଗିଲେ ।

ରାନୁ କହିଲା, 'କୁନି, ତୁ ଯାହା କହ ପଛେ, ମତେ କିନ୍ତୁ ପତାକା ଖୁବ୍ ବଢ଼ିଆ ଲାଗୁଛି ।' ବୋଉ ବି ରାନୁ ସାଙ୍ଗରେ କଥା ମିଳାଇଲେ । 'ହଁ କୁନି, ରାନୁ ଯାହା କହିଲା ତା' ବି ସତ । ପ୍ରକୃତରେ ମଣିଷ ଜୀବନରେ ପତାକାର ବିଶେଷ ଗୁରୁତ୍ୱ ରହିଛି । ତା' ହେଲା, ପତାକା ତାକୁ ଭଲ ଲାଗେ । ଏଥିରୁ ସେ କାମ କରିବା ପାଇଁ ପ୍ରେରଣା ପାଏ । ମଣିଷ ଅନ୍ୟ ଜୀବମାନଙ୍କ ଠାରୁ ଯଥେଷ୍ଟ ଅଲଗା ଓ ଉନ୍ନତ ଜୀବଟିଏ । ସେ କେବଳ ଖାଇ, ଶୋଇ, ଛୁଆ ଜନ୍ମ କରି ଜୀବନକୁ ସାରିଦେବାକୁ ଚାହେଁ ନାହିଁ । ସେ ପ୍ରକୃତିର ପରଖଶାଳାରେ ବିଭିନ୍ନ ରକମର ପରୀକ୍ଷା କରିବାକୁ ଚାହେଁ । କିନ୍ତୁ ଏକା ଏକା ନୁହେଁ । ସମାଜର ଅନ୍ୟମାନଙ୍କ ସହ ମିଶି ଚେଷ୍ଟା ଚଳାଇଲେ ହିଁ କାମଟିର ଗୁରୁତ୍ୱ ରହେ ଓ ସେ ସମାଜରେ ଆଦର ପାଏ । ଦଳରେ ରହି ଏସବୁ କାମ କରିବାରେ ମଣିଷ ଅନେକ ସୁବିଧା ପାଏ ।

ନିଜ ଜୀବନର ସୁରକ୍ଷା ସାଙ୍ଗକୁ କାମରେ ସାଥି ସହଯୋଗ, ଆଗରୁ ହୋଇଥିବା ପରଖଗୁଡ଼ିକର ଅନୁଭୂତି, ଅଭିଜ୍ଞତା, ଦକ୍ଷତା, ଆଶା, ..... ପରି ଅନେକ କିଛି । ଫଳରେ ତା' ଜୀବନଟି ଆନନ୍ଦମୟ ଓ ସୃଜନଶୀଳ ହୋଇ ପାରିଥାଏ । ଏଥିରେ ବ୍ୟକ୍ତିର ନିଜସ୍ୱ ବିକାଶ ସାଙ୍ଗକୁ ସମାଜ ମଧ୍ୟ ଲାଭବାନ ହୁଏ । ଯେଉଁ ଦେଶରେ ବ୍ୟକ୍ତିର ମନଲାଖି ବିଷୟରେ ଦକ୍ଷତା ଯେତେ ବଢ଼େ, ସେହି ଦେଶ ସେତେ ଉନ୍ନତ ହୋଇପାରେ । ଏହି ପରିବେଶ ସୃଷ୍ଟି କରିବାରେ ପତାକା ଦେଶଟାଯାକର ମଣିଷଙ୍କୁ ପ୍ରେରଣା ଯୋଗାଏ । ନିଜ ଦେଶର ପତାକା ତଳେ ସେମାନେ ସମସ୍ତେ ପରସ୍ପରକୁ ଭଲ ପାଇ ପାରନ୍ତି, ଆଶା ଦେଖି ପାରନ୍ତି, ଏକାଠି ରହନ୍ତି ଏବଂ ସୁରକ୍ଷା ଓ ଆନନ୍ଦ ପାଆନ୍ତି ।

କିନ୍ତୁ ପତାକା ନଥିଲେ.....ଭାବିଲ ଦେଖି..... ଆମେ କ'ଣ ଏସବୁ ପାଇ ପାରନ୍ତେ ? ଯେଉଁ ଦେଶର ପତାକା ଉପଯୁକ୍ତ ଆଦର ଓ ସମ୍ମାନ ପାଇପାରେ ନାହିଁ, ସେ ଦେଶରେ ସବୁ ପ୍ରକାରର ଅବନତି ଦେଖାଦିଏ । ଗୋଟିଏ ବନ୍ଦୀ ଚଢ଼େଇ ପରି ପରାଧୀନ ଦେଶର ମଣିଷମାନେ କେବେ ଜୀବନର ଅସଲ ସୁଆଦ ଚାଖିପାରିବେ ନାହିଁ କି ଜୀବନରେ ସ୍ୱପ୍ନ ଦେଖି ପାରିବେ ନାହିଁ । ସେମାନେ ପରସ୍ପରକୁ ବୃହତ ଅର୍ଥରେ ଭଲ ପାଇପାରିବେ ନାହିଁ କି ବିଶ୍ୱାସ ରଖି ପାରିବେ ନାହିଁ ।

କାରଣ ତାଙ୍କର ସୁରକ୍ଷା ନଥିବ । ସେମାନଙ୍କ ଅନେକ ଶକ୍ତି ଏଦଗରେ ଲୋଡା ହେବ । କେବଳ ଗୋଟିଏ ଅସଲ ସ୍ୱାଧୀନ ଲୋକର ଶକ୍ତି ହିଁ ପୂର୍ଣମାତ୍ରାରେ ସକାରାତ୍ମକ ଦଗରେ ଲାଗିପାରିବ । ତେଣୁ ପତାକା ହେଉଛି 'ବିକାଶ'ର ପ୍ରତୀକ । ମଣିଷର ବିକାଶର ଅର୍ଥ ହେଉଛି : ନିଜ ହାତରେ ନିଜ ସ୍ୱପ୍ନର ସ୍ୱର୍ଗ ରଚିବା । ସବୁ ମଣିଷଙ୍କର ହାତ ମିଶି ପୃଥିବୀରେ ସ୍ୱର୍ଗ ସାକାର ହେବ ।

ରାନୁ କହିଲା, 'ବାପା, ଏହା ତ ଖୁସିର କଥା । କିନ୍ତୁ ପୃଥିବୀର ଏତେ ମଣିଷ କିପରି ହାତ ମିଳାଇବେ ? ସମସ୍ତେ ତ ନିଜ ନିଜ ପତାକାକୁ ଧରି ବସିଛନ୍ତି । ଦେଶ ଦେଶ ଭିତରେ ଯୁଦ୍ଧ ହେଉଛି । ମଣିଷ ତା'ର ସାଥି ମଣିଷକୁ ନିଜ ହାତରେ ମାରି ପକାଉଛି ।' ବାପା କହିଲେ, 'ଏହା ସତ । ଏପରି ଅନେକ ଅମଣିଷ କାମ ଚାଲୁଛି । କିନ୍ତୁ ପୃଥିବୀଟାଯାକର ମଣିଷକୁ ଏକାଠି ଦେଖିଲେ ଆମେ ଦେଖିବା, ପ୍ରକୃତରେ ପ୍ରତ୍ୟେକ ମଣିଷ ଅନ୍ୟମଣିଷମାନଙ୍କୁ ଯଥେଷ୍ଟ ଭଲ ପାଏ । ସେ ଅନ୍ୟମାନଙ୍କୁ ଯେତିକି ଜାଣିପାରେ, ତା' ଜୀବନରେ ଆଶା, ବିଶ୍ୱାସ, ସୃଜନଶୀଳତାର ଆନନ୍ଦ ସେତିକି ବଢ଼ିପାରେ । ଯିଏ ଅନ୍ୟମାନଙ୍କ ଭଲକୁ ଦେଖିବା ଓ ଭୁଲକୁ କ୍ଷମା ଦେଇ ସୁଧାରିବା ଶିଖିଯାଏ, ସେ ମଣିଷ ହୋଇଯାଏ । ଆମ ଶିକ୍ଷା ବ୍ୟବସ୍ଥାର କେତେକ ସଂକୀର୍ଣତା ଯୋଗୁଁ ମଣିଷର ଅସଲ ବିକାଶ ହୋଇ ପାରୁନାହିଁ ।

କିନ୍ତୁ ଏହା ହିଁ ଏକମାତ୍ର ବାଟ । ମଣିଷ ମଣିଷକୁ ଭଲ ପାଇବା ଓ ହାତ ମିଳାଇବା ହିଁ ମଣିଷର ଅସଲ ସୁସ୍ଥତା । ଏପରି ସୁସ୍ଥ ମଣିଷଟିଏ ନିଜ ଦେଶର ପତାକାଠାରୁ ପ୍ରେରଣା ପାଇବ ଓ ଅନ୍ୟ ଦେଶର ପତାକାକୁ ଦେଖିଲେ ବି ତା'ର ସେହି ଦେଶର ପ୍ରିୟ ସାଥିମାନଙ୍କ ପାଇଁ ସେତିକି ଆନନ୍ଦିତ ହେବ । ପୃଥିବୀର ସବୁ ଦେଶ ଓ ସେମାନଙ୍କ ପତାକା ସମାନ ସମ୍ମାନର ଯୋଗ୍ୟ । ବିଭିନ୍ନ ଦେଶର ପତାକାକୁ ଏକାଠି ରଖାଯିବା ସମୟରେ ଏକ ଉଚ୍ଚତାରେ ରଖାଯାଏ । ଏମାନେ ସବୁ ବିଶ୍ୱପ୍ରେମର ପ୍ରତୀକ । ପତାକା ନ ରହିଲେ ମଣିଷକୁ ଏହି ଭାବଟି କିଏ ମନେ ପକାଇଦେବ ? ପାଠ ବହି, ଶିକ୍ଷକ, କଳଗାଉଣା ଆଦି ସମସ୍ତେ ଏ ବିଷୟରେ କହିବା ସାଙ୍ଗକୁ ଆଖି ଆଗରେ ଏହି ପ୍ରେରଣା ଦାୟକ ପ୍ରତୀକଟି ମଣିଷ ଭିତରେ ଏହି ବିଶ୍ୱପ୍ରେମ ଓ ଶାନ୍ତିର ଭାବଟିକୁ ଜଗାଇଦିଏ । ପତାକା ତଳେ ଠିଆ ହେଲାବେଳେ ତୁମେ ବି ଏହାକୁ ଅନୁଭବ କରିପାରିବ । ସମସ୍ତେ ପତାକା ତଳେ ଠିଆ ହୋଇ ପତାକା ଉତ୍ତୋଳନ କରିବା, ଏକାଠି ଗୀତ ଗାଇବା ଓ ସଲାମ କରିବାରେ ଏକ ସ୍ୱତନ୍ତ୍ର ଆନନ୍ଦ ମିଳେ । ସମସ୍ତଙ୍କ ମୁହଁ ଆଶା ଓ ବିଶ୍ୱାସରେ ସତେଜ ହୋଇଉଠେ । ସତ ନା ନୁହେଁ ?'

## ପତାକାର ଭାଷା

ସେଦିନ ରାତିଟା ସେମାନଙ୍କ ପାଇଁ, 'ପତାକା ରାତି' ବନି ଯାଇଥିଲା । ବିଭିନ୍ନ ଦିଗରୁ ଆଲୋଚନା ସାରି ସମସ୍ତେ ଶୋଇବାକୁ ଗଲେ । କାଲି ସକାଳେ ନୀଳ ଆକାଶର ଧଳା ମେଘ, ମୁକ୍ତ ଚଢ଼େଇଙ୍କ ମେଳରେ ମୁକ୍ତି ଓ ବିକାଶର ସନ୍ଦେଶ ବୁଣି ବିଶ୍ୱପ୍ରେମର ପ୍ରତୀକ ଆମ ଜାତୀୟ ପତାକାଟି ହସିଉଠିବ । ଏହାକୁ ଭାବୁ ଭାବୁ କୁନୁ, ରାନୁ ବି ଶୋଇ ପଡ଼ିଲେ ।

ଅଳ୍ପ ସମୟ ଭିତରେ ରାନୁ ଅନୁଭବ କଲା, ସେ ଏକ ସୁନ୍ଦର ଦୁନିଆରେ ଅଛି । ଛୋଟ ଗ୍ଲୋବଟି ଉପରେ ପୃଥିବୀଟାଯାକର ପିଲା ଠିଆ ହୋଇଛନ୍ତି । ସେମାନେ ପାଖାପାଖି ଥିବାରୁ ପୃଥିବୀର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏଁ ସମସ୍ତଙ୍କୁ ଦେଖି ପାରୁଛନ୍ତି । ଆଫ୍ରିକାର ସୁନ୍ଦର କଫିରଙ୍ଗର ପିଲାଙ୍କର କୁଞ୍ଚୁକୁଞ୍ଚିଆ ବାଳ ସାଙ୍ଗକୁ ମନଖୋଲା ହସ ଚମତ୍କାର ଦେଖାଯାଉଥାଏ । ଜାପାନର ଛୁଆଙ୍କଗୋଲ ମୁହଁରେ ଉଜ୍ଜ୍ୱଳ କଳା ଆଖି କହୁଥାଏ ଏମାନେ ଖୁବ୍ ପରିଶ୍ରମୀ । ଏସ୍କିମୋ ଛୁଆସବୁ ଗରମ ପୋଷାକରେ ମୁଣ୍ଡରୁ ପାଦ ଯାଏଁ ଢାଙ୍କି ହୋଇ ରହିଥାନ୍ତି । କଇଁଚଙ୍କ ପରି ସେମାନଙ୍କ ଗୁଲୁଗାଲିଆ ମୁହଁଗୁଡିକ ସୁନ୍ଦର ଦେଖାଯାଉଥାଏ ।

ଫ୍ରାନ୍ସର ଗୋରାପିଲାମାନେ ଦଳରେ ଖେଳୁ ଖେଳୁ ହସି ହସି ଗଡି ଯାଉଥାନ୍ତି । ଭାରତ ପରି କେତେ ଦେଶରେ ଅନେକ ପିଲାଙ୍କର ଦେହରେ ଜାମା ଚିରି ଯାଇଥାଏ । ସେମାନେ ଦୁର୍ବଳ ଥାନ୍ତି । କିନ୍ତୁ ସମସ୍ତଙ୍କ ଶୁଖିଲା ମୁହଁରେ ହସ ଦେଖିବାକୁ ମିଳୁଥାଏ । ଗୋଟିଏ ଛୋଟ ଜାଗାରେ ଥିବାରୁ ଖୁସିରେ ପରସ୍ପରକୁ ଦେଖି ସମସ୍ତେ ହାତ ହଲାଉଥାନ୍ତି । ନୂଆ ଜାଗାର ନୂଆ ପିଲାଙ୍କର ହାବଭାବ ଦେଖି ସମସ୍ତଙ୍କୁ ଭାରି ମଜା ଲାଗୁଥାଏ । ପାଖରେ ଥିବା ନିଜ ଦେଶର ସାଥିମାନଙ୍କୁ ଅନ୍ୟ ଦେଶ ପିଲାଙ୍କର ନୂଆ ନୂଆ କଥା ସବୁ ଦେଖାଇ କହୁଥାନ୍ତି । ପ୍ରତି ଦେଶରେ ତା'ର ଜାତୀୟ ପତାକାଟି ଫର ଫର ହୋଇ ଉଡୁଥାଏ । ପୃଥିବୀଟା ହସିଲା ପିଲାଙ୍କର ଏହି ପରିବେଶରେ ଖୁବ୍ ଚମତ୍କାର ମନେ ହେଉଥାଏ ।

ଏଥର ଏକ ମଧୁର ଗୀତ ଶୁଣାଗଲା । ଏହାଥିଲା ବିବିଧ ରକମର ଚଢେଇଙ୍କ କାକଳୀ । ଚଢେଇଗୁଡିକୁ ଦେଖି ହେଉ ନଥାଏ । ଏହି ସ୍ୱର କେଉଁ ଦିଗରୁ ଆସୁଛି ତା ବି ଜଣା ପଡୁନଥାଏ । ପିଲାମାନେ ଏଣେତେଣେ ଧାଇଁ ଚଢେଇଗୁଡିକୁ ଦେଖିବାକୁ ଚେଷ୍ଟା କଲେ । ଅଳପ ସମୟ ଭିତରେ ପିଲାମାନେ ଏଣେତେଣେ ମିଶିଗଲେ । ଦୂର ଦୂରାନ୍ତର ପିଲାଙ୍କୁ ପାଖରେ ପାଇ ସମସ୍ତଙ୍କ ଆନନ୍ଦ କହିଲେ ନସରେ । ବେଶ୍ କିଛି ସମୟ ଧରି ସେମାନେ ପରସ୍ପରର ଜୀବନ ଓ ରାଇଜ ବିଷୟରେ କେତେ କଥା ଗପିଗଲେ । କିଏ ଆଉ ଜଣଙ୍କ ସହ ହାତ ମିଳାଉଥାଏ; କିଏ ନାକକୁ ନାକ ଘଷୁଥାଏ; କିଏ ନମସ୍କାର କରୁଥାଏ; କିଏ ଆଉ ଜଣକୁ କୁଣ୍ଢାଇ ପକାଉଥାଏ । ଲାଗୁଥାଏ ଯେମିତି ପୃଥିବୀରେ ଏକ ନୂଆ ବସନ୍ତ ବିରାଜିଛି ।

ଏହି ଆନନ୍ଦମୟ ମୁହୂର୍ତ୍ତ ସମସ୍ତଙ୍କ ଭିତରେ ଅଫୁରନ୍ତ ଆନନ୍ଦ ଆଣିଦେଲା । କିଛି ସମୟ ପରେ ସମସ୍ତେ ପରସ୍ପରଠାରୁ ବିଦାୟ ନେଇ ନିଜ ଦେଶକୁ ଚାଲିଲେ । ନିଜ ନିଜ ପତାକାକୁ ଦେଖି ସେମାନେ ନିଜ ଜାଗାରେ ପହଞ୍ଚିଗଲେ । ପୁଣି ଆଗପରି ନିଜର ମାଟି, ପାଣି ପବନ ସାଙ୍ଗକୁ ପ୍ରିୟ ସାଥିଙ୍କ ସହ ମିଶି ତାଙ୍କର ଉଦ୍ଦାମତା ଦେଖାଦେଲା । ଏଥର ପତାକା ସବୁ ମାଟି ଛାଡି ଉପରକୁ ଉଠିବାରେ ଲାଗିଲେ । ସମସ୍ତେ ସମତାଳରେ ଉପରକୁ ଉଠୁଥାନ୍ତି । ପିଲାମାନେ କୁତୂହଳୀ ହୋଇ ଘଟଣାଟିକୁ ଅନାଇ ରହିଥାନ୍ତି । କ୍ରମଶଃ ପତାକାଗୁଡିକ ପରସ୍ପର ଆଡକୁ ପାଖେଇ ଆସିଲେ । ଗୋଟିଏ ଧାଡିରେ ଏକା ଉଚ୍ଚତାରେ ସେମାନେ ଏକ ଅପୂର୍ବ ଦୃଶ୍ୟ ସୃଷ୍ଟି କରୁଥାନ୍ତି । ଇନ୍ଦ୍ରଧନୁର ଆକର୍ଷଣୀୟ ସାତ ରଙ୍ଗଠାରୁ ବି ଆହୁରି ବିବିଧ ମନେ ହେଉଥିଲା ସେମାନଙ୍କର ଚମତ୍କାର ରଙ୍ଗ ଓ ପ୍ରତୀକଗୁଡିକ ।

ସେମାନେ ବେଶ୍ ଉପରକୁ ଉଠିଗଲେ । ଏଥର ସବୁ ପତାକାର ରଙ୍ଗ ଆଉ ଦେଖାଗଲା ନାହିଁ । ଦେଖାଗଲା ଚିହ୍ନ ବିହୀନ ଏକ ଶୁଭ୍ର ପତାକା । ସାତ ରଙ୍ଗ ମିଶି ଧଳା ଆଲୁଅ ସୃଷ୍ଟି ହେଲା ପରି ସବୁ ପତାକାର ରଙ୍ଗକୁ ନେଇ ଏହା ଅତି ଉଜ୍ଜ୍ୱଳ ଜଣା ପଡୁଥିଲା । ପିଲାଙ୍କୁ ଏହା ଆହୁରି ସୁନ୍ଦର ଦେଖାଗଲା । କାରଣ ଏଥିରେ ସମସ୍ତେ ନିଜ ପତାକାଟି ଲୁଚି ରହିଥିବାର ଅନୁଭବ କରୁଥିଲେ । ପତାକାଟି ଝିଲ୍ ଝିଲ୍ ହୋଇ ହସୁଥାଏ । ତା'ର ରୂପ ସମସ୍ତଙ୍କୁ ବିକାଶର ଆଶ, ବିଶ୍ୱାସ, ସ୍ୱପ୍ନ ଓ ଆହ୍ୱାନ ଦେଉଥିଲା । ସମସ୍ତେ ତା'ର ଭାଷାକୁ ବୁଝି ପାରୁଥିଲେ । ସେ ସମସ୍ତେ ବୁଝି ପାରିଲା ପରି ଏକ ଅଜଣା ଭାଷାରେ କହି ଚାଲିଥିଲା । ସେମାନେ କିଛି ଶୁଣୁ ନଥିଲେ; କିନ୍ତୁ ବୁଝି ପାରୁଥିଲେ :

'ଆମେ ସମସ୍ତେ ଏହି ଜୀବନ୍ତ ଗ୍ରହଟିର ପ୍ରିୟ ସନ୍ତାନ । ଆମେ ସମସ୍ତେ ରୂପରେ ଅନେକ କିନ୍ତୁ ଭାବରେ ଏକ । ସମସ୍ତଙ୍କର ମଙ୍ଗଳ ହେଲେ ହିଁ ମୋର ମଙ୍ଗଳ ହେବ । ଜୀବନର ଅର୍ଥ ସ୍ୱାଧୀନତା ଓ ମୁକ୍ତି, ଜୀବନର ସବୁ ରକମର ପାଶବିକ ସୀମାରୁ ଉର୍ଦ୍ଧ୍ୱରେ ଏକ ସୁସ୍ଥ ସମାଜ । '

ରାନୁ ପାଇଁ ଏହି ସମୟଟି ଅପୂର୍ବ ଅହ୍ୱାନରେ ଭରି ଉଠିଥିଲା । ସେ ଅନୁଭବ କରୁଥିଲା ତା'ର ପ୍ରିୟ ତ୍ରିରଙ୍ଗା ତାକୁ ଏହି ଦର୍ଶନ ଶିଖାଉଛି । ସେ ଏକ ଜାତୀୟ ପତାକା, ଯିଏ ତାକୁ ଗୋଟିଏ ପଟେ ବିଶ୍ୱପ୍ରେମ ଓ ବିଶ୍ୱଶାନ୍ତିର ଦୀକ୍ଷା ଦେଉଛି । ଆରପଟେ ନିଜ ଜନ୍ମଭୂମି, ଯାହାର ମାଟି, ପାଣି ପବନରେ ତା' ଦେହ ଓ ଭାବ ଗଢା ହୋଇଛି, ତା'ର ଯତ୍ନନେବା ପାଇଁ ଆହ୍ୱାନ ଶୁଣାଉଛି । ଖାଲି ରାନୁ ନୁହେଁ, ରାନୁର ସ୍ୱପ୍ନରେ ପ୍ରତ୍ୟେକ ପିଲା ତା' ଜାତୀୟ ପତାକାଠାରୁ ଏହି ପ୍ରେରଣା ହିଁ ପାଉଥିଲା ।

ଏହି ସମୟରେ ରାନୁର ମନରୁ ଏହି ଛବିଟି ହଠାତ୍ ଉଭେଇଗଲା । ସେ ବ୍ୟସ୍ତ ହୋଇ ଏହାକୁ ପୁଣି ଦେଖିବା ପାଇଁ ଆଖି ମେଲି ଚାହିଁଲା । ସେତେବେଳେ ସେ ଜାଣି ପାରିଲା ଯେ ସେ ସ୍ୱପ୍ନ ଦେଖୁଥିଲା । ଏକ ଅପୂର୍ବ ସ୍ୱପ୍ନ । ତା'ର ନିଦ ଭାଙ୍ଗିବା କାରଣ ଥିଲା ଅଗଷ୍ଟ ପନ୍ଦରର ଡାକରା । ସାହିରେ କଳଗାଉଣା କହୁଥିଲା, 'ରଘୁପତି ରାଘବ.....।' ପ୍ରଭାତର ରାମଧୂନ୍ ମାଧ୍ୟମରେ ଲୋକଙ୍କୁ ଏକ ସ୍ୱାଧୀନତାପ୍ରେମୀ ଭାବରେ ଭରି ଦେବା ପାଇଁ ଏହା ପ୍ରଥମ ପର୍ବ ଥିଲା । ଗାଡିଟା ଗାଁ ସାରା ଏହି ଧୂନ୍‌କୁ ଶୁଣାଇ ଶୁଣାଇ ବୁଲୁଥିଲା । ଅଳ୍ପ ସମୟ ଭିତରେ ଏହାର ଶବ୍ଦ କ୍ରମେ କମି କମି ଆଉ ଶୁଣାଗଲା ନାହିଁ ।

## ଅଗଷ୍ଟ ପନ୍ଦରର ପରଶ

ଘରେ ସମସ୍ତେ ପ୍ରସ୍ତୁତ ହୋଇଗଲେ । ସକାଳ କାମ ସାରି ସମସ୍ତେ ପତାକା ଧରି ଦାଣ୍ଡକୁ ଚାଲିଲେ । ପତାକାଟି ଭିତରେ ବୋଉ ଆଗରୁ କିଛି ଫୁଲ ରଖି ଏହାକୁ ବିଧି ଅନୁସାରେ ବାନ୍ଧି ରଖିଥିଲେ । ବାପା, ବୋଉ ମିଶି ପତାକାଟିକୁ ବାଉଁଶ ଖୁଣ୍ଟି ଅଗରେ ବାନ୍ଧିଲେ । ବାପା ଘର ଛାତରେ ଚଢି ବାଉଁଶକୁ କଷି କରି ବାନ୍ଧି ଦେଲେ । ସମସ୍ତେ ପତାକା ଖୁଣ୍ଟି ତଳେ ଘେରିଯାଇ ଠିଆ ହେଲେ । ପତାକାର ରସିଟିକୁ ବୋଉ ଭିଡି ଦେଲାକ୍ଷଣି ପତାକାଟି ଖୋଲିବାରେ ଲାଗିଲା । ଫୁଲତକକୁ ସମସ୍ତଙ୍କ ମୁଣ୍ଡରେ ବିଛିଦେଇ ସେ ଝିଲ୍ ଝିଲ୍ ହୋଇ ଉଡିବାରେ ଲାଗିଲା । କି ସୁନ୍ଦର ଦେଖାଯାଉଥାଏ

ସେ । କେତେ ଆନନ୍ଦିତ ଲାଗୁଥାଏ ସେହି ସମୟରେ । ସମସ୍ତେ ସାବଧାନ ରହି ଏକାସ୍ୱରରେ ଜାତୀୟ ସଙ୍ଗୀତ ଗାଇଲେ । ଏହାପରେ ବୋଉ ଆରମ୍ଭ କଲେ : 'ରେ ପତାକା, ଜାତିର ଗରବ.....' ସମସ୍ତେ ପାଳି ଧରିଲେ । କାଲିର ଆଲୋଚନା ପ୍ରଭାବରେ ଆଜି ପତାକାଟା ଆହୁରି ବଡ ଓ ସୁନ୍ଦର ଦେଖାଯାଉଥିଲା ।

ରାନୁ ଓ କୁନୁ ସ୍କୁଲକୁ ବାହାରିଲେ .....



## ଭାରତର ଜାତୀୟ ପତାକା ବ୍ୟବହାର ନିୟମାବଳୀ

(୧) *ସାଧାରଣ ନିୟମ*

ଯେଉଁ ସବୁ ଅବସରରେ ସରକାରୀ ପତାକା ଉଡାଇବାକୁ ହେବ, ସେଠାରେ ଭାରତୀୟ ମାପ ସଂସ୍ଥା (ଇଣ୍ଡିଆନ ଷ୍ଟାଣ୍ଡାର୍ଡସ୍ ଇନ୍‌ଷ୍ଟିଚ୍ୟୁସନ୍)ଙ୍କ ନିର୍ଦ୍ଦିଷ୍ଟ ମାପ ଓ ନିୟମ ଅନୁଯାୟୀ ପ୍ରସ୍ତୁତ ଏବଂ ଉକ୍ତ ସଂସ୍ଥାର ଛାପା ମରାଯାଇଥିବା ପତାକା ବ୍ୟବହାର କରିବାକୁ ହେବ । ଅନ୍ୟାନ୍ୟ ଅବସରରେ ମଧ୍ୟ କେବଳ ଯଥାଯଥ ଆକାରର ଏଭଳି ପତାକା ଉଡାଇବା ବାଞ୍ଛନୀୟ ।

(୨) *ଆକାର*

ଜାତୀୟ ପତାକା ନିମ୍ନଲିଖିତ ୫ଟି ଧାର୍ଯ୍ୟ ହୋଇଥିବା ମାପରେ କିଣିବାକୁ ମିଳେ, ଯଥା :-

(୧) ୨୧' x୧୪'  (୨) ୧୨' x ୮'  (୩) ୬' x ୪'

(୪) ୩' x ୨'  (୫) ୯"x ୬"

ପତାକା ଉଡାଇବାକୁ ହେଲେ ଠିକ୍ ମାପର ପତାକା ବାଛିବା ଉଚିତ । ସବୁଠାରୁ କମ୍ ମାପର ପତାକା କେବଳ ମଟରକାର୍‌ରେ ବ୍ୟବହୃତ ହେବାପାଇଁ ଉଦ୍ଦିଷ୍ଟ ।

## (ଗ) ପତାକା ପ୍ରଦର୍ଶନର ଯଥାର୍ଥ ପ୍ରଣାଳୀ

(କ) ଯେଉଁଠାରେ ପତାକା ଉଡାଯିବ ସେଠାରେ ଏହା ସମ୍ମାନର ସ୍ଥାନ ଅଧିକାର କରିବ ଓ ଏହାର ସ୍ଥାନ ସୁସ୍ପଷ୍ଟରୂପେ ରଖାଯିବ ।

(ଖ) ସରକାରୀ କୋଠାମାନଙ୍କରେ ପତାକା ଉଡାଇବାକୁ ହେଲେ, ଏହା ରବିବାର ଓ ଛୁଟିଦିନ ସମେତ ସବୁଦିନ ଉଡାଯିବ ଓ ପାଗର ଅବସ୍ଥା ଯେପରି ହୋଇଥାଉ ପଛକେ, ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଉଡୁଥିବ । ଏଭଳି କୋଠା ଉପରେ ରାତିରେ ମଧ୍ୟ ପତାକା ଉଡାଯାଇପାରେ, କିନ୍ତୁ କେବଳ ଅତି ବିଶିଷ୍ଟ ଅବସରରେ ଏହା କରାଯିବ ।

(ଗ) ସର୍ବଦା ଫୁର୍ତ୍ତିରେ ପତାକା ଉତ୍ତୋଳନ କରାଯିବ ଏବଂ ଧୀରେ ଧୀରେ ଓ ସମାରୋହ ସହକାରେ ଅବନମିତ ହେବ । ଯଦି ପତାକା ଉତ୍ତୋଳନ ଓ ଅବନମନ ବେଳେ ଯଥାଯଥଭାବେ ବିଗୁଲ ବଜାଯାଉଥାଏ, ତେବେ ବିଗୁଲ ସ୍ୱର ଶୁଣାଯିବା ସଙ୍ଗେ ସଙ୍ଗେ ପତାକା ଉତ୍ତୋଳନ ବା ଅବନମନ କରାଯିବା ।

(ଘ) ଯେତେବେଳେ କୌଣସି ଝରକାରୁ, ବାଲକନିରୁ କିମ୍ବା ଗୃହର ସମ୍ମୁଖ ଭାଗରୁ କ୍ଷିତିଜର ସମାନ୍ତରାଳରେ କିମ୍ବା କୋଣ ଭାଙ୍ଗି ବାହାରକୁ ବାହାରିଥିବା ଖଣ୍ଡିଏ ଛଡରୁ ପତାକା ଉଡାଯାଉଥାଏ, ସେତେବେଳେ ପତାକା-ଦଣ୍ଡର ଯେଉଁ ପାଖଟି କାନ୍ଥଠାରୁ ଦୂରକୁ ଥିବ ସେହି ପଟକୁ ପତାକାର କେଶରୀ ରଙ୍ଗ ରହିବ ।

(ଙ) ଯଦି ଛଡ ଉପରେ ଉଡା ନ ଯାଇ ଅନ୍ୟ କୌଣସି ପ୍ରକାରେ ପତାକା ଉଡାଯାଉଥାଏ, ତେବେ କୌଣସି କାନ୍ଥ ଉପରେ ସମତଳ ଭାବରେ ଓ କ୍ଷିତିଜର ସମାନ୍ତରାଳରେ ପତାକା ଉଡାଯାଉଥିଲେ, ପତାକାର କେଶରୀ ରଙ୍ଗବିଶିଷ୍ଟ ଅଂଶ ଊର୍ଦ୍ଧ୍ୱତମ ହୋଇରହିବ, କିନ୍ତୁ ଯେତେବେଳେ ପତାକା ଲମ୍ବଭାବରେ ଉଡାହେବ, ସେତେବେଳେ କେଶରୀ ଅଂଶ ପତାକାର ଡାହାଣ ପଟକୁ ରହିବ, ଅର୍ଥାତ୍ ପତାକା ଆଡକୁ ମୁହଁ କରି ଜଣେ ଲୋକ ଠିଆ ହେଲେ କେଶରୀ ଅଂଶ ତାଙ୍କର ବାମ ପଟକୁ ରହିବ ।

(ଚ) ଯଦି ଉତ୍ତର-ଦକ୍ଷିଣ ଭାବରେ ଗତି କରୁଥିବା କୌଣସି ରାସ୍ତାର ମଧ୍ୟଭାଗରେ ଊର୍ଦ୍ଧ୍ୱରେ ପତାକା ଉଡାଯାଉଥାଏ, ତେବେ ପତାକାକୁ ସିଧା ଝୁଲାଇ ରଖିବାକୁ ହେବ ଏବଂ କେଶରୀ ରଙ୍ଗର ଅଂଶ ଉତ୍ତର ଦିଗକୁ ରହିବ । କିନ୍ତୁ ପୂର୍ବ-ପଶ୍ଚିମଭାବେ ଗତି କରୁଥିବା ରାସ୍ତାର ଊର୍ଦ୍ଧ୍ୱରେ ଉଡାଯାଉଥିଲେ ପତାକାର କେଶରୀ ରଙ୍ଗ ପୂର୍ବ ଦିଗକୁ ରହିବ ।

(ଛ) ଯଦି କୌଣସି ସଭାମଞ୍ଚରେ ପତାକା ଉଡାଯାଉଥାଏ, ତେବେ ତାହା ବକ୍ତାଙ୍କ ଡାହାଣ ପଟକୁ ରହିବ । ଯଦି ଏହା ଅନ୍ୟ ଭାବେ ପ୍ରଦର୍ଶିତ ହୋଇଥାଏ, ତେବେ ପତାକାଟି ବକ୍ତାଙ୍କ ପଛପଟେ ଓ ଊର୍ଦ୍ଧ୍ୱରେ ରହିବ ।

(ଜ) କୌଣସି ପ୍ରତିମୂର୍ତ୍ତି ଉନ୍ମୋଚନ ଭଳି ଅବସରରେ ବ୍ୟବହୃତ ହେଉଥିଲେ ପତାକାଟି ସୁସ୍ପଷ୍ଟ ଓ ପୃଥକ୍‌ଭାବେ ପ୍ରଦର୍ଶିତ ହେବ ।

ଟିପ୍‌ପଣୀ : - ପ୍ରତିମୂର୍ତ୍ତି ବା ସ୍ମାରକର ଆବରଣରୂପେ ପତାକା ବ୍ୟବହାର କରାଯିବ ନାହିଁ ।

(ଙ) ଯଦି କୌଣସି ମଟରକାର୍ ଉପରେ ପତାକା ଉଡାଯାଏ, ତେବେ କାର୍‌ର ସାମନାପଟେ ଦୃଢଭାବେ ସଂଲଗ୍ନ କରାଯାଇଥିବା ଗୋଟିଏ ଦଣ୍ଡ ବା ଛଡରେ ଏହା ଉଡାଯିବ ।

(ଛ) କୌଣସି ଶୋଭାଯାତ୍ରା ବା ପରେଡ୍‌ରେ ନିଆଗଲାବେଳେ ପତାକାଟି ଶୋଭାଯାତ୍ରାର ଅଗ୍ରଭାଗରେ ଡାହାଣ ପଟକୁ ରହିବ, ଅର୍ଥାତ୍ ପତାକାଟି ନିଜର ଡାହାଣ ପଟକୁ ରହିବ, କିମ୍ବା ଯଦି ଅନ୍ୟ କେତେକ ପତାକା ଗୋଟିଏ ଧାଡିରେ ନିଆଯାଉଥାଏ, ତେବେ ଧାଡିର ସାମନାର କେନ୍ଦ୍ର ସ୍ଥାନରେ ପତାକାଟି ରହିବ ।

(୪) *ପତାକା ପ୍ରଦର୍ଶନର ଭୁଲ ପ୍ରଣାଳୀ*

(କ) ନଷ୍ଟ ହୋଇଯାଇଥିବା କିମ୍ବା ଅବ୍ୟବସ୍ଥିତ ବା ମୋଡି-ମକଚି ହୋଇ ଯାଇଥିବା ପତାକା ପ୍ରଦର୍ଶନ କରାଯିବ ନାହିଁ ।

(ଖ) କୌଣସି ବ୍ୟକ୍ତି ବା ବସ୍ତୁକୁ ପ୍ରଣାମ ଜଣାଇବା ଉଦ୍ଦେଶ୍ୟରେ ପତାକା ନତ କରାଯିବ ନାହିଁ ।

(ଗ) ଅନ୍ୟ କୌଣସି ପତାକା ବା ବାନା ଜାତୀୟ ପତାକାଠାରୁ ଉଚ୍ଚରେ କିମ୍ବା ଉର୍ଦ୍ଧ୍ୱରେ ରଖାଯିବ ନାହିଁ କିମ୍ବା ଏହାପରେ ଉଲ୍ଲେଖ ରହିଥିବା ଅବସ୍ଥା ବ୍ୟତୀତ ଅନ୍ୟ ଅବସ୍ଥାରେ ଜାତୀୟ ପତାକାର ପାଖାପାଖି ରଖାଯିବ ନାହିଁ । ଆଉମଧ ଯେଉଁ ସ୍ତମ୍ଭରେ ଜାତୀୟ ପତାକା ଉଡା ଯାଉଥିବ, ତାହାର ଉପରେ କିମ୍ବା ଉର୍ଦ୍ଧ୍ୱରେ ଫୁଲ କିମ୍ବା ମାଳ କିମ୍ବା ପ୍ରତୀକ ପ୍ରଭୃତି ଅନ୍ୟ କୌଣସି ଜିନିଷ ରଖାଯିବ ନାହିଁ ।

(ଘ) ଅନ୍ୟ କୌଣସି ପତାକା ଜାତୀୟ ପତାକା ସହିତ ଉଡାଯାଇପାରିବ ନାହିଁ, ଏବଂ

(ଙ) ଏହି ନିୟମାବଳୀରେ ବିଶେଷ ଭାବରେ କ୍ଷମତାପନ୍ନ କରାଯାଇଥିବା ସ୍ଥଳ ବ୍ୟତୀତ ଅନ୍ୟ ସ୍ଥଳରେ ଜାତୀୟ ପତାକା ଭିନ୍ନ ଅନ୍ୟ କୌଣସି ପତାକା ସରକାରୀ କୋଠାବାଡି, ସରକାରୀ ବାସଭବନ, ସରକାରୀ ମଟର ଗାଡି ପ୍ରଭୃତି ଉପରେ ଉଡାଯିବ ନାହିଁ ।

(ଚ) ତୋରଣ, କୃତ୍ରିମ ଗୋଲାପଫୁଲ ବା ବାନା ଆକାରରେ, କିମ୍ବା ସାଜସଜ୍ଜା ଉଦ୍ଦେଶ୍ୟରେ ଅନ୍ୟ କୌଣସି ପ୍ରକାରେ ଜାତୀୟ ପତାକା ବ୍ୟବହୃତ ହେବନାହିଁ । ଆଉମଧ ଅନ୍ୟାନ୍ୟ ରଙ୍ଗୀନ୍ କନାକୁ ଏପରି ଭାବରେ ସଜାଇ ରଖାଯିବନାହିଁ ଯେପରିକି ତାହା ଜାତୀୟ ପତାକା ଭଳି ଦେଖାଯିବ ।

(ଛ) ସଭା ସମିତିରେ ବକ୍ତାଙ୍କ ଟେବୁଲର ଆଚ୍ଛାଦନ ରୂପେ କିମ୍ବା ସଭା ମଞ୍ଚ ଉପରେ ଝାଲର ଆକାରରେ ଜାତୀୟ ପତାକା ବ୍ୟବହାର କରାଯିବ ନାହିଁ ।

(ଜ) କେଶରୀ ରଙ୍ଗକୁ ଅଧୋମୁଖୀ କରି ଜାତୀୟ ପତାକା ପ୍ରଦର୍ଶନ କରାଯିବ ନାହିଁ ।

(ଝ) ଜାତୀୟ ପତାକାକୁ ଭୂମି କିମ୍ବା ଘର ତଳ ସ୍ପର୍ଶ କରିବାକୁ କିମ୍ବା ପାଣିରେ ଘୁସୁରିବାକୁ ଦିଆଯିବ ନାହିଁ ।

(ଞ) ଜାତୀୟ ପତାକାକୁ ଏପରି ଭାବରେ ପ୍ରଦର୍ଶନ କରାଯିବ ନାହିଁ ବା ବନ୍ଧାଯିବ ନାହିଁ, ଯଦ୍ୱାରାକି ଏହାର କ୍ଷତି ଘଟିପାରେ ।

## (୫) ଜାତୀୟ ପତାକାର ଅପବ୍ୟବହାର

(କ) ରାଷ୍ଟ୍ରୀୟ ବା ସାମରିକ ଶବ ସତ୍କାର ଉଦ୍ଦେଶ୍ୟରେ ପତାକାର ବ୍ୟବହାର ସଂପର୍କରେ ଯେଉଁ ବ୍ୟବସ୍ଥା ରହିଛି ତାହା ବ୍ୟତୀତ ଅନ୍ୟ କୌଣସି ଆକାରରେ ଜାତୀୟ ପତାକାକୁ ଝାଲର ବା ଆଚ୍ଛାଦନ ଉଦ୍ଦେଶ୍ୟରେ ବ୍ୟବହାର କରାଯିବ ନାହିଁ ।

(ଖ) କୌଣସି ଗାଡି ବା ରେଳଗାଡି ବା ନୌକାର ଛାତ, ଉପରି ଭାଗ, ପାର୍ଶ୍ୱ ବା ପଶ୍ଚାତଭାଗରେ ଜାତୀୟ ପତାକାକୁ ଝାଲର ବା ପରଦା ଆକାରରେ ରଖାଯିବ ନାହିଁ ।

(ଗ) ଜାତୀୟ ପତାକାଟି ଏପରି ଭାବେ ବ୍ୟବହାର କରାଯିବ ନାହିଁ ବା ଗଚ୍ଛିତ ରଖାଯିବ ନାହିଁ ଯେପରିକି ତାହା ନଷ୍ଟ ବା ମସିଆ ହୋଇଯିବ ।

(ଘ) ଯେତେବେଳେ ପତାକାଟି ନଷ୍ଟ ବା ମସିଆ ହୋଇଯିବ, ସେତେବେଳେ ଏହାକୁ ଆଡେଇ ରଖି ଦିଆଯିବ ନାହିଁ କିମ୍ବା ଅସମ୍ମାନର ସହିତ ନଷ୍ଟ କରାଯିବ ନାହିଁ; ପରନ୍ତୁ ପତାକାର ଗୌରବ କ୍ଷୁର୍ଣ ନକରି ତାହାକୁ ଏକାନ୍ତ ସ୍ଥାନରେ ପୋଡିଦିଆଯିବ କିମ୍ବା ଅନ୍ୟ କୌଣସି ଉପାୟରେ ନଷ୍ଟ କରି ଦିଆଯିବ, ଜାତୀୟ ପତାକାର ମର୍ଯ୍ୟାଦା ଦୃଷ୍ଟିରୁ, ନଷ୍ଟ ହୋଇଯାଇଥିବା ଜାତୀୟ ପତାକା ଯଦି ସାମାନ୍ୟ ଛିଣ୍ଡି ଯାଇଥାଏ ଓ ଉପଯୁକ୍ତ ଭାବେ ରଫୁ କରାଯାଇଥାଏ, ତେବେ ମଧ୍ୟ ତାହା ପ୍ରଦର୍ଶିତ ହେବା ଅନୁଚିତ ।

(ଙ) ଘରର ଆଚ୍ଛାଦନରୂପେ ପତାକାର ବ୍ୟବହାର କରାଯିବ ନାହିଁ ।

(ଚ) କୌଣସି ପ୍ରକାରର ଉର୍ଦ୍ଦୀ (ୟୁନିଫର୍ମ) ପରିଚ୍ଛଦର ଅଂଶବିଶେଷ ରୂପେ ଜାତୀୟ ପତାକା ବ୍ୟବହୃତ ହେବ ନାହିଁ । ଗଦି ବା ରୁମାଲ ଉପରେ ଜାତୀୟ ପତାକାର ଚିତ୍ର ବୁଣାଯିବ ନାହିଁ କିମ୍ବା ଗାମୁଛା ବା ବାକ୍ସ ଉପରେ ଛପା ଯିବ ନାହିଁ ।

(ଛ) ଜାତୀୟ ପତାକା ଉପରେ କୌଣସି ପ୍ରକାରର ଅକ୍ଷର ଲେଖାଯିବ ନାହିଁ ।

(ଜ) କୌଣସି ପ୍ରକାର ବିଜ୍ଞାପନରେ ଜାତୀୟ ପତାକା ବ୍ୟବହାର କରାଯିବ ନାହିଁ କିମ୍ବା ଯେଉଁ ସ୍ତମ୍ଭରୁ ଜାତୀୟ ପତାକା ଉଡାଯାଏ, ସେଥିରେ ଜାତୀୟ ପତାକାକୁ ବାନ୍ଧି କୌଣସି ପ୍ରକାର ବିଜ୍ଞାପନ ସଙ୍କେତ ଆକାରରେ ତାହା ବ୍ୟବହାର କରାଯିବ ନାହିଁ ।

(ଝ) କୌଣସି ଦ୍ରବ୍ୟ ଗ୍ରହଣ କରିବା, ଦେବା, ରଖିବା ବା ବହିନେବା ଉଦ୍ଦେଶ୍ୟରେ ଜାତୀୟ ପତାକାକୁ ଏକ ଆଧାର ରୂପେ ବ୍ୟବହାର କରାଯିବ ନାହିଁ ।

ଟିପ୍ପଣୀ – ପୂର୍ବରୁ କେନ୍ଦ୍ର ସରକାରଙ୍କ ଅନୁମତି ନନେଇ କୌଣସି ବ୍ୟବସାୟ, ବାଣିଜ୍ୟ, ବୃତ୍ତି ବା ପେଶା ଉଦ୍ଦେଶ୍ୟରେ କିମ୍ବା କୌଣସି ଏକସ୍ୱ (ପେଟେଣ୍ଟର) ସଜ୍ଞାରେ କିମ୍ବା କୌଣସି ବ୍ୟବସାୟ ସଙ୍କେତ (ଟ୍ରେଡ୍ ମାର୍କ) ବା ନକସାରେ ଜାତୀୟ ପତାକା କିମ୍ବା ତାହାର କୌଣସି ରଙ୍ଗୀନ୍ ଅନୁକରଣର ବ୍ୟବହାର ଏକ ଅପରାଧ ଅଟେ ।

## (୬) ଜାତୀୟ ଦିବସ ବା ବିଶେଷ ଉତ୍ସବ ଉପଲକ୍ଷେ ପ୍ରଦର୍ଶନ

ନିମ୍ନଲିଖିତ ଉତ୍ସବ ଉପଲକ୍ଷେ ଜାତୀୟ ପତାକାର ପ୍ରଦର୍ଶନ ଉପରେ କୌଣସି କଟକଣା ରହିବ ନାହିଁ ।

(କ) ଜନରାଜ୍ୟ ଦିବସ - ଉତ୍ସବର ଆଦ୍ୟରୁ ଆରମ୍ଭ କରି ପରିସମାପ୍ତି ପର୍ଯ୍ୟନ୍ତ ସମୟରେ;

(ଖ) ଜାତୀୟ ସପ୍ତାହ - ଅପ୍ରେଲ ୬ ତାରିଖଠାରୁ ଅପ୍ରେଲ ୧୩ ତାରିଖ ପର୍ଯ୍ୟନ୍ତ - ଜାଲିଆନାୱାଲାବାଗର ଶହୀଦମାନଙ୍କ ସ୍ମୃତି ପାଳନାର୍ଥେ;

(ଗ) ସ୍ୱାଧୀନତା ଦିବସ

(ଘ) ମହାତ୍ମା ଗାନ୍ଧୀଙ୍କ ଜୟନ୍ତୀ

(ଙ) ଅନ୍ୟ ଯେକୌଣସି ନିର୍ଦ୍ଦିଷ୍ଟ ଜାତୀୟ ଉତ୍ସବ ଦିବସ ।

ଦେଶର ସମସ୍ତ ପ୍ରଧାନ ପ୍ରଧାନ କୋଠାବାଡି ଉପରେ ଉପର୍ଯ୍ୟୁକ୍ତ ଜାତୀୟ ଦିବସ ଓ ବିଶେଷ ବିଶେଷ ଉତ୍ସବ ଉପଲକ୍ଷେ ଜାତୀୟ ପତାକା ଉଡାଯିବା ଆବଶ୍ୟକ ।

ଟିପ୍ପଣୀ - କିନ୍ତୁ ଏଭଳି ଉତ୍ସବରେ ମଧ୍ୟ ମଟର ଗାଡି ଉପରେ ଜାତୀୟ ପତାକା ଉଡାଇବା ସଂପର୍କରେ ଯେଉଁସବୁ ସାଧାରଣ ବ୍ୟବସ୍ଥା ରହିଛି, ସେସବୁ କୋହଳ କରାଯିବ ନାହିଁ ।

*(୭) ପତାକା ଅଭିବାଦନ*

ପତାକା ଉତ୍ତୋଳନ ବା ପତାକା ଅବନମନ ଉତ୍ସବ ସମୟରେ କିମ୍ବା ଯେତେବେଳେ କୌଣସି ପରେଡ୍ ବା ପ୍ରଦର୍ଶନରେ ପତାକା ନିଆଯାଇଥାଏ, ସେତେବେଳେ ସେଠାରେ ଉପସ୍ଥିତ ଥିବା ସମସ୍ତ ଲୋକ ପତାକା ଆଡକୁ ମୁହଁ କରି ସାବଧାନ ହୋଇ ଠିଆହେବେ । ଯେଉଁମାନେ ଉର୍ଦ୍ଦୀ (ୟୁନିଫର୍ମ) ପିନ୍ଧି ଉପସ୍ଥିତ ଥିବେ, ସେମାନେ ପତାକାକୁ ଯଥାରୀତି ଅଭିବାଦନ ଜଣାଇବେ । ଯେତେବେଳେ ପତାକା ଧରି ଲୋକେ ଗୋଟିଏ ଧାଡିରେ ଗତି କରୁଥିବେ, ସେତେବେଳେ ସେଠାରେ ଉପସ୍ଥିତ ଥିବା ଲୋକେ ପତାକା ସେମାନଙ୍କୁ ଅତିକ୍ରମ କରୁଥିବାବେଳେ ସାବଧାନ ହୋଇ ଠିଆହେବେ ବା ଅଭିବାଦନ ଜଣାଇବେ । କୌଣସି ଉଚ୍ଚ ପଦାଧିକାରୀ ପଗଡି ବା ଶିରଚ୍ଛାଦ ପରିଧାନ ନ କରି ଅଭିବାଦନ ଗ୍ରହଣ କରିପାରନ୍ତି ।

## ପରିଶିଷ୍ଟ

ବିଦ୍ୟାଳୟଗୁଡିକରେ ଜାତୀୟ ପତାକା ଉତ୍ତୋଳନ, ପତାକା ଅଭିବାଦନ ଓ ଶପଥ ଗ୍ରହଣ ଉଦ୍ଦେଶ୍ୟରେ ପତାକା ସମ୍ପର୍କରେ ଆଦର୍ଶ ନିର୍ଦ୍ଦେଶାବଳୀ

*ପତାକା ଉତ୍ତୋଳନ ସମ୍ପର୍କରେ ନିର୍ଦ୍ଦେଶ -*

(୧) ଗୋଟିଏ ଉନ୍ମୁକ୍ତ ବର୍ଗାକାର କ୍ଷେତ୍ରରେ ସ୍କୁଲର ଛାତ୍ରଛାତ୍ରୀ ଓ ଶିକ୍ଷକମାନେ ସମବେତ ହେବେ । ଛାତ୍ରଛାତ୍ରୀମାନେ ଉକ୍ତ ବର୍ଗାକାର କ୍ଷେତ୍ରର ତିନି ପାଖରେ ଠିଆ ହେବେ ଓ ପତାକାସ୍ତମ୍ଭ ଚତୁର୍ଥ ପଟର ମଧ୍ୟବର୍ତ୍ତୀ ସ୍ଥାନରେ ରହିବ । ପ୍ରଧାନ ଶିକ୍ଷକ, ଛାତ୍ରନେତା ଓ ପତାକାଉନ୍ମୋଚନକାରୀ ବ୍ୟକ୍ତି (ପ୍ରଧାନ ଶିକ୍ଷକଙ୍କ ବ୍ୟତୀତ ଯଦି ଅନ୍ୟ କେହି ପତାକା ଉତ୍ତୋଳନ କରୁଥାନ୍ତି ତେବେ ସେ ବ୍ୟକ୍ତି) ପତାକା ସ୍ତମ୍ଭର ୩ ପାଦ ପଛକୁ ଠିଆ ହେବେ ।

(୨) ଶ୍ରେଣୀ ଅନୁଯାୟୀ ଓ ଦଶଜଣିଆ ଦଳରେ କିମ୍ବା ଛାତ୍ରଛାତ୍ରୀସଂଖ୍ୟା ଅନୁଯାୟୀ ଅନ୍ୟ ସଂଖ୍ୟା ବିଶିଷ୍ଟ ଦଳରେ ବିଭକ୍ତ ହୋଇ ଛାତ୍ରଛାତ୍ରୀମାନେ ଠିଆହେବେ । ଦଳଗୁଡିକୁ ଗୋଟିକ

ପଛରେ ଅନ୍ୟ ଗୋଟିଏ କରି ଛିଡ଼ା କରାଇବାକୁ ହେବ । ଶ୍ରେଣୀର ଛାତ୍ରନେତା ନିଜ ଶ୍ରେଣୀ ପ୍ରଥମ ଧାଡ଼ିର ଡାହାଣ ପାଖକୁ ଏବଂ ଶ୍ରେଣୀ ଶିକ୍ଷକ ନିଜ ଶ୍ରେଣୀର ଶେଷଧାଡ଼ିର ୩ ପାଦ ପଛରେ ମଝି ଆଡ଼କୁ ଛିଡ଼ା ହେବେ, ବର୍ଗାକାର କ୍ଷେତ୍ରରେ ପ୍ରଥମେ ଉଚ୍ଚତମ ଶ୍ରେଣୀ ଓ ତାହାପରେ ତାଠାରୁ ନିମ୍ନ ଶ୍ରେଣୀ ଏହି କ୍ରମରେ ଛାତ୍ରଛାତ୍ରୀମାନେ ଛିଡ଼ାହେବେ ଓ ସର୍ବୋଚ୍ଚ ଶ୍ରେଣୀ ଡାହାଣ ପଟର ଶେଷଭାଗରେ ରହିବେ ।

(୩) ପ୍ରତି ଧାଡ଼ି ମଝିରେ ଅନ୍ତତଃ ଏକ ପାଦ ବା ୩୦ଇଞ୍ଚ ବ୍ୟବଧାନ ରହିବା ଉଚିତ ଏବଂ ଗୋଟିଏ ଶ୍ରେଣୀରୁ ଅନ୍ୟ ଶ୍ରେଣୀ ଭିତରେ ମଧ୍ୟ ଏହି ମାପର ବ୍ୟବଧାନ ରହିବା ଉଚିତ ।

(୪) ପ୍ରତି ଫର୍ମ ବା ଶ୍ରେଣୀ ପ୍ରସ୍ତୁତ ହେଲାପରେ ଶ୍ରେଣୀରେ ଛାତ୍ରନେତା ଆଗକୁ ଚାଲିଆସିବେ ଓ ବିଦ୍ୟାଳୟର ନିର୍ବାଚିତ ଛାତ୍ରନେତାଙ୍କୁ ଅଭିବାଦନ ଜଣାଇବେ । ସବୁଶ୍ରେଣୀ ପ୍ରସ୍ତୁତ ହୋଇଯିବାପରେ ବିଦ୍ୟାଳୟର ଛାତ୍ରନେତା ପ୍ରଧାନ ଶିକ୍ଷକଙ୍କ ନିକଟକୁ ଆଗେଇଆସି ତାଙ୍କୁ ଅଭିବାଦନ ଜଣାଇବେ, ପ୍ରଧାନ ଶିକ୍ଷକ ପ୍ରତ୍ୟାଭିବାଦନ ଜଣାଇବେ । ତାପରେ ପତାକା ଉନ୍ମୋଚନ କରାଯିବ । ଏଥିରେ ବିଦ୍ୟାଳୟର ଛାତ୍ରନେତା ତାଙ୍କୁ ସାହାଯ୍ୟ କରିପାରନ୍ତି ।

ପରେଡ୍ (ବା ସମ୍ମେଳନ) ଦାୟିତ୍ୱରେ ଥିବା ବିଦ୍ୟାଳୟର ଛାତ୍ରନେତା ପତାକା ଉନ୍ମୋଚନର ଠିକ୍ ପୂର୍ବରୁ ସମବେତ ଛାତ୍ରଙ୍କୁ ସାବଧାନ ହୋଇ ଛିଡ଼ା ହେବାକୁ ଆଦେଶ ଦେବେ ଓ ପତାକା ଫିଟି ଉଡ଼ିବାକୁ ଆରମ୍ଭ କରିବା ସଙ୍ଗେ ସଙ୍ଗେ ଅଭିବାଦନ ଜ୍ଞାପନ କରିବାକୁ ନିର୍ଦ୍ଦେଶ ଦେବେ । ପରେଡ୍ ଅଳ୍ପ ସମୟପାଇଁ ଅଭିବାଦନ ଜ୍ଞାପନ କରିବା ଅବସ୍ଥାରେ ରହିବ ଓ ତାହାପରେ 'ଅର୍ଡର' ବୋଲି ଆଦେଶ ଦିଆଗଲେ ପରେଡ ସାବଧାନ ଅବସ୍ଥାକୁ ଆସିବ ।

(୫) ପତାକା ପ୍ରତି ଅଭିବାଦନ ଜ୍ଞାପନ ହେଲାପରେ ଜାତୀୟ ସଙ୍ଗୀତ (ଜନଗଣମନ) ବୋଲାଯିବ । ଏହି ଅନୁଷ୍ଠାନବେଳେ ପରେଡ ସାବଧାନ ଅବସ୍ଥାରେ ଦଣ୍ଡାୟମାନ ରହିବେ ।

(୬) ସମସ୍ତ ଶପଥ ଗ୍ରହଣ ଉପଲକ୍ଷରେ ଜାତୀୟ ସଙ୍ଗୀତ ବୋଲାଯିବା ପରେହିଁ ଶପଥ ଗ୍ରହଣ ଅନୁଷ୍ଠିତ ହୋଇଥାଏ । ଶପଥ ଗ୍ରହଣ ସମୟରେ ସମବେତ ଛାତ୍ର ଓ ଶିକ୍ଷକ ସାବଧାନ ଅବସ୍ଥାରେ ଠିଆହୋଇ ରହିବେ ଓ ପ୍ରଧାନ ଶିକ୍ଷକ ସମାରୋହ ସହକାରେ ଶପଥ ପାଠ କରାଇବେ ଓ ସମବେତ ଛାତ୍ରଛାତ୍ରୀମାନେ ପ୍ରଧାନ ଶିକ୍ଷକଙ୍କ ଶପଥ ବାକ୍ୟ ଉଚ୍ଚାରଣ କରିବା ପରେ ପରେ ଶପଥ ଆବୃତ୍ତି କରିବେ ।

*ଜାତୀୟ ପତାକା ପ୍ରତି ଆନୁଗତ୍ୟ ପ୍ରଦର୍ଶନ -*

ଜାତୀୟ ପତାକା ପ୍ରତି ଆନୁଗତ୍ୟ ସଂପର୍କରେ ଶପଥ ଗ୍ରହଣ କଲାବେଳେ ସ୍କୁଲମାନଙ୍କରେ ନିମ୍ନଲିଖିତ ବିଧି ଅନୁସୃତ ହେବ :

*ସମସ୍ତେ ଯୋଡହସ୍ତରେ ଏକାଠି ନିମ୍ନଲିଖିତ ଶପଥ ଆବୃତ୍ତି କରିବେ : 'ଜାତୀୟ ପତାକା ପ୍ରତି ଓ ଏହି ପତାକା ଯେଉଁ ସାର୍ବଭୌମ ଗଣତାନ୍ତ୍ରିକ ଜନରାଜ୍ୟର ପ୍ରତୀକ, ତାହା ପ୍ରତି ଅନୁଗତ ରହିବା ପାଇଁ ମୁଁ ଶପଥ ଗ୍ରହଣ କରୁଛି ।'*

● • ● •

## କେତୋଟି ଲୋକପ୍ରିୟ ପତାକା ସଂଗୀତ

ପତାକା ତଳକୁ ଆସରେ
ଗାନ୍ଧୀନାମେ ଯେବେ ବିଶ୍ୱାସ ଅଛି
ପତାକା ତଳକୁ ଆସରେ ।
ମୁକତି-ଗଙ୍ଗାର ଢେଉ ଛୁଟିଆସେ
ବେଗାବେଗି ଦିଅ ଝାସରେ ।
ଜଳିଲାଣି ଅରି ପ୍ରଳୟ ଅନଳ
ଥରିଉଠେ ଆଜି ଅଷ୍ଟ କୁଳାଚଳ
ଦେବତା ଦେଶରେ ଦାନବ ରାଜତ୍ୱ
ମେଲିଅଛି ନାଗପାଶରେ ।

● *ଜାତୀୟ କବି ବୀରକିଶୋର*

* * * * *

ବିଜୟୀ ବିଶ୍ୱ ତିରଙ୍ଗା ପ୍ୟାରା
ଝଣ୍ଡା ଉଞ୍ଚା ରହେ ହମାରା ।
ସଦା ଶକ୍ତି ସରସାନେ ୱାଲା
ପ୍ରେମ-ସୁଧା ବରଷାନେ ୱାଲା
ବୀରୋଁ କୋ ହର୍ଷାନେ ୱାଲା
ମାତୃଭୂମି କା ତନ ମନ ସାରା
ଝଣ୍ଡା ଉଞ୍ଚା ରହେ ହମାରା (୧)
ଶାନ ନ ଇସକୀ ଜାନେ ପାୟେ
ଚାହେ ଜାନ ଭଲେ ହୀ ଜାୟେ
ବିଶ୍ୱ ବିଜୟ କରକେ ଦିଖଲାୟେଁ
ତବ ହୋୱେ ପ୍ରାଣ ପୂର୍ଣ ହମାରା
ଝଣ୍ଡା ଉଞ୍ଚା ରହେ ହମାରା (୨)

● *ଶ୍ୟାମଲାଲ୍ ଗୁପ୍ତ*



ରେ ପତାକା ! ଜାତିର ଗରବ,
ଜାତିର ଜୀବନ ପରାଣ ତୁହିରେ ।
ଏକତା ପୀରତି ଶାନ୍ତ ମୂରତି
ସୁନ୍ଦର କେ ତୋର ସମାନ ନୋହିରେ ।
ତୋହରି ଲାଗି କେତେ ଯେ ସମର
ଲାଗିଛି, ଜାଗିଛି କିରତୀ ଅମର,
ତୋହରି ଲାଗି କେତେ କାରାଗାର
ବରିଲେ, ମରିଲେ ସମର ଭୂଇଁରେ (୧)
ଉଡିଛୁ ଉଡୁଛୁ ଉଡୁଥିବୁ ପରା
ଯାବତ ଏ ଦେଶ ଧରିଥିବ ଧରା
ଯାବତ ଜାତିର ଜଣିଏ ପରାଣେ
ଥିବ ତୁ ରାଜିବୁ ଗଗନ ଛୁଇଁରେ ।

● ଚାରଣ କବି ବାଞ୍ଛାନିଧି ମହାନ୍ତି

